# ଅନ୍ଧକାରର ପୂରବୀ

ବସନ୍ତ କୁମାର ମହାପାତ୍ର








ଜନତା ରଙ୍ଗମଞ୍ଚ ଦ୍ୱାରା ଅଭିନୀତ

## ଅନ୍ଧକାରର ପୂରବୀ

**ପୁରୁଷ ଭୂମିକାରେ ଭାଗ ନେଇଥିଲେ—**

ଜୟନ୍ତ : ନଟବର
ଶୁଭେନ୍ଦୁ : ନିକୁଞ୍ଜ
ସଞ୍ଜୀବ : ସତ୍ୟ
ଶେଠ : କାର୍ତ୍ତିକ ଦା'
ରଚନା : ମଙ୍ଗୁଳି
ଅଦ୍ୱୈତ : ନେତ୍ରାନନ୍ଦ
ଗୁରୁଚରଣ : ବୃନ୍ଦାବନ
ନିତ୍ୟାନନ୍ଦ : ଉପେନ୍ଦ୍ର
ବାବୁଲ : ବାବୁଲି

**ସ୍ତ୍ରୀ ଭୂମିକାରେ ଭାଗ ନେଇଥିଲେ—**

ଲଗ୍ନା : ସରସ୍ୱତୀ
ସୁମିତ୍ରା : ସୌଦାମିନୀ
କନକ : ବିଦ୍ୟୁଲତା

ନିର୍ଦ୍ଦେଶକ : ନଟବର ସେଣ

ସହ ନିର୍ଦ୍ଦେଶକ : ସଚ୍ଚି ଦାସ

ସଙ୍ଗୀତ ନିର୍ଦ୍ଦେଶକ : ପ୍ରଫୁଲ୍ଲ କର

ନୃତ୍ୟ ନିର୍ଦ୍ଦେଶକ : ରଘୁ ଦତ୍ତ

ମଞ୍ଚ ପରିକଳ୍ପନା : ବୃନ୍ଦାବନ, ମଙ୍ଗୁଳି, କାର୍ତ୍ତିକ

ଆଲୋକ : ରଘୁନାଥ

ଗାୟକ : ରଘୁନାଥ

ସ୍ମାରକ : ପ୍ରଫୁଲ୍ଲ ମିଶ୍ର, ସଚ୍ଚି ଦାସ

ରଚନା : ଶ୍ରୀ ବସନ୍ତକୁମାର ମହାପାତ୍ର



# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ଚଳଚ୍ଚିତ୍ରଶିଳ୍ପୀ ଜୟନ୍ତଙ୍କର ଭଡ଼ା ନେଇଥିବା ସୁସଜ୍ଜିତ ଉପର ମହଲାର ଏକ flat. ଘରଟିର ଦୁଇ ପାଖରେ ଦୁଇଟି ଦ୍ୱାର—ଗୋଟିଏ ସିଡ଼ିଦେଇ ବାହାରୁ ଘରଭିତରକୁ ଓ ଅନ୍ୟଟି ଘର ଭିତରକୁ ଅନ୍ୟ roomକୁ ଯିବାପାଇଁ। ମଝିରେ ଗୋଟାଏ ବଡ଼ଟ ଝରକା। ସେଇ ଝରକା ଦେଇ ନୀଳ ଆକାଶ ଓ ଉପର ମହଲାର balcony ଦେଖାଯାଏ। ଘର ଭିତରକୁ ଯିବା ରାସ୍ତା ( stageର ବାମପଟ ) ପାଖରେ sofa set ଓ teapoy ସଜ୍ଜିତ ଏବଂ ବାହାରୁ ଆସିବା ( stageର ଡାହାଣ ପଟ ) ଦ୍ୱାର ପାଖରେ ଗୋଟିଏ ଅଫିସ ଟେବୁଲ। ସେଇଠି ଜୟନ୍ତଙ୍କର ଫୋନ୍‌ଟିଏ ରଖାଯାଇଛି ଓ film ସମ୍ବନ୍ଧୀୟ ଫାଇଲପତ୍ର ଆଦି ମଧ୍ୟ ଥୁଆଯାଇଛି। Balconyରେ ଦେଖାଯାଉଥିବା ଝରକା ପାଖରେ ଆଉ ଗୋଟିଏ ଟୁଲ। ସେଥିରେ ଫୁଲଦାନୀ, ରେଡ଼ିଓ ଇତ୍ୟାଦି ମଧ୍ୟ ଅଛି।

ଅନ୍ଧକାରର ପୂରବୀ

ଝରକା ଦେଇ ଓ ବାହାରର balcony ଦେଇ ଦେଖାଯାଉଚ ଖୋଲା ଆକାଶ । ସନ୍ଧ ପ୍ରାୟ ୧୦ଟା । ଝରକା ଦେଇ ଜହ୍ନ, ତାର ଆଧ ଦେଖାଯାଉଚ । ବାହାରେ ସମ୍ମିଳିତ ଜନତାର ପାଟି ଓ ଚିତ୍କାର ଶୁଭୁଚ : "ଆମେ ଲଗ୍ନା ଦେବୀଙ୍କୁ ଦେଖିବାକୁ ଚାହୁଁ" ଇତ୍ୟାଦ । ଜୟନ୍ତର ନୂତନ ଆବିଷ୍କାର, ଚଳଚ୍ଚିତ୍ରନାୟିକା ଲଗ୍ନା ଏଇ ଘରେ ରହେ । ତା'ର ଅଭିନୀତ ପ୍ରଥମ ଛବି ଆଜ release ହୋଇଚ । ସେଇଥିପାଇଁ ଏ ଘର ଆଗରେ ଲୋକଙ୍କର କୋଳାହଳ— କ୍ରମେ ବଢ଼ିଚାଲିଚ । ସେମାନଙ୍କ ତରଫରୁ ଦାବୀ ହଉଚ ଲଗ୍ନା ଦେବୀଙ୍କୁ ଦେଖିବାକୁ ।

କିଛି ସମୟ ପରେ ବ୍ୟସ୍ତ ବିବ୍ରତ ଲଗ୍ନା room ଭିତରକୁ ପଶିଆସିଲା । ଛବି release କର ହଲରୁ ଫେରିଆସିବା ବେଳର ସାଜସଜ୍ଜା ଏବେ ବି ତା ଦେହରେ ରହିଚ । ବାହାରର ଗୋଳମାଳର କାରଣ ସେ କିଛି ବୁଝିପାରୁ ନ ଥିଲା । ତେଣୁ ସେ ବିବ୍ରତ ହୋଇ ଫୋନ୍ ନିକଟକୁ ଆସି ଫୋନ୍ କରିଚ— ]

ଲଗ୍ନା—Hallo. Enquiry ! ଲାଲବାଗ ପୋଲିସ ଷ୍ଟେସନର ନମ୍ବରଟା କେତେ ?

[ ବାହାରୁ ହଠାତ୍ ଏତିକିବେଳେ ପଶିଆସିଚ ଜୟନ୍ତ । ହାତରେ film ସମ୍ବନ୍ଧୀୟ ଫାଇଲ ଇତ୍ୟାଦ । ଦେହରେ ନୂଆ ଲୁଗା ଓ ଚଦର । ହାତରେ ଫୁଲମାଳ ]

ଜୟନ୍ତ—ହଠାତ୍ ପୋଲିସଷ୍ଟେସନର ନମ୍ବରଟା ଖୋଜୁଚ ଯେ ?

( ଫୋନ୍ ରଖିଦେଇ ସ୍ୱସ୍ତିର ନିଶ୍ୱାସ ନେଇ )

ଲଗ୍ନା—ଇସ୍, ଆପଣ ଆସିଯାଇଚନ୍ତି, ଭଲ ହେଇଚ ! ଶୁଣୁଚନ୍ତି ବାହାରେ କମିତି ପାଟି ଚିତ୍କାର ?

ଜୟନ୍ତ—ବାହାରେ ଲୋକ ପାଟି କରୁଚନ୍ତି, କରନ୍ତୁ । ଏଥିରେ ଏତେ ବ୍ୟସ୍ତ ହବାର କ'ଣ ଅଛି ? ( ଫାଇଲ ରଖି ଅତି ସହଜ ଭାବରେ ଅଫିସ ଚେୟାରରେ ବସିପଡ଼ି ଅନ୍ୟ କାମ କରିବାରେ ବ୍ୟସ୍ତ )

ଲଗ୍ନା—( ଆଶ୍ଚର୍ଯ୍ୟ ହେଇ ) କ'ଣ କହୁଚନ୍ତି ଆପଣ ?

ଜୟନ୍ତ—ହଁ, ଲଗ୍ନା, ଏଥିରେ ଏମିତି ବିବ୍ରତ ହବାର କିଛି ନାହିଁ । ବରଂ ଏଇ ହେଉଚି ଜୀବନରେ ତମ ସାର୍ଥକତାର ଜୟମାଲ୍ୟ ।

ଲଗ୍ନା—ନା, ଏ କୋଲାହଳ, ଏ ପାଟିତୁଣ୍ଡ ଭିତରେ ମୋ ଶ୍ୱାସରୁଦ୍ଧ ହେଇଯାଉଚି । ସେମାନେ କ'ଣ ଚାହାନ୍ତି ?

ଜୟନ୍ତ—ସେମାନେ ତମର fan, ତମ ରୂପମୁଗ୍ଧ ପାଗଳ ଜନତା; ତମର ଅଭିନୟରେ ପାଗଳ ଦର୍ଶକ ।

ଲଗ୍ନା—( ବିସ୍ମୟସୂଚକ ଚାହାଣିରେ ଚାହିଁ ରହିଥାଏ କେବଳ )

ଜୟନ୍ତ—ଆଜି ତମର ପ୍ରଥମ ଛବି ସହରରେ release ହେଇଚ । ସେମାନେ ଆସିଚନ୍ତି ତୁମକୁ ଅଭିନନ୍ଦନ ଜଣେଇବାକୁ । ଏଇ ପାଟି ଚିତ୍କାର, କୋଲାହଳ ତମର ଜୟଧ୍ୱନି, ତମର ସାଫଲ୍ୟର slogan. ଏହା ପରେ ତମର ପ୍ରତିଟି ଛବି release ହେବା ସଙ୍ଗେ ସଙ୍ଗେ ଏଇ ଚିତ୍କାର ଏଇ ଅଭିନନ୍ଦନ ତୁମକୁ ଗ୍ରହଣ କରିବାକୁ ପଡ଼ିବ ।

ଲଗ୍ନା—ଜୟନ୍ତବାବୁ, ମୁଁ ଏ ସବୁ······

ଜୟନ୍ତ—ହଁ ଲଗ୍ନା, ଏଇ ଗ୍ଲାମରାସ ଜଗତରେ ତମେ ନୂଆ ପାଦ ଦେଇଚ । ସେଇଥିପାଇଁ ତୁମକୁ ଏସବୁ ଖରାପ ଲାଗୁଚି । କିନ୍ତୁ ସ୍ୱା'ର ଉପରେ ତୁମର ଭବିଷ୍ୟତ ନିର୍ଭର କରେ ।

ଲଗ୍ନା—ଆପଣଙ୍କ କଥା କିଛି ବୁଝିପାରୁନି, ଜୟନ୍ତବାବୁ !

ଜୟନ୍ତ—ତମେ ଜାଣିଚ ଲଗ୍ନା, କା'ଲି ଖବରକାଗଜ ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ କ'ଣ ବାହାରିବ ?

ଲଗ୍ନା—କ'ଣ ?

ଜୟନ୍ତ—ବାହାରିବ, ନୂତନ ଅଭିନେତ୍ରୀ ଲଗ୍ନା ଦେବୀଙ୍କୁ ଅଭିନନ୍ଦନ ଜଣେଇବା ପାଇଁ ଦଶହଜାର ଜନତା ତାଙ୍କ ଘର ଉପରେ ଚଢ଼ାଉ କରିଚନ୍ତି । ତା ଭିତରୁ କେତେକ ଅନଶନ କରିଚନ୍ତି, କେତେ ମଟର ଧକ୍କାରେ ମରିଚନ୍ତି । ଆଉ ସିନେମା ଦେଖି ଦେଖି କେତେଜଣ faint ହୋଇଯାଇଚନ୍ତି । ଏହାର publicity value କ'ଣ ଜାଣ ଲଗ୍ନା ? ତୁମକୁ ଦେଖିବାକୁ ଲୋକେ ଆତୁର ପାଗଳ ହେବେ । ସିନେମାରେ ଭିଡ଼ ବଢ଼ିବ । ଲୋକେ black ଟିକେଟ କିଣିବେ । ପ୍ରତିଦିନ ଲୋକ ଟିକେଟ ନ ପାଇ ଫେରିବେ । ତା'ପରେ ୧୦ ସପ୍ତାହ record ଦେଇ ଛବିଟା ଚଳଚ୍ଚିତ୍ରରେ ବିସ୍ମୟ ସୃଷ୍ଟି କରିବ । Producer ହିସାବରେ ଆମେ ଏତିକି ଚାହୁଁ । ଆଉ ଶିଳ୍ପୀ ହିସାବରେ ତୁମେ ପ୍ରସ୍ତୁତ ହୋଇଯାଅ ଗୋଟାକ ପରେ ଗୋଟାଏ ଛବିରେ contract sign କରିବାପାଇଁ ।

ଲଗ୍ନା—ମୋର ମନେହଉଚି, ମତେ ଉତ୍ସାହିତ କରିବାପାଇଁ ଆପଣ ଏସବୁ କହୁଚନ୍ତି । ଏଇ ଗୋଟାକ ଛବିରେ ଅଭିନୟ କରିବାକୁ ଯାଇ ମୁଁ ଯେ ପ୍ରତି ମୁହୂର୍ତ୍ତରେ କେତେ ବିଚଳିତ ହୋଇଚି, ଆପଣ ସେକଥା ଜାଣନ୍ତି ନାହିଁ । ଭୟ, ଆଶଙ୍କା, ଆତଙ୍କ ଭିତରେ କଟିଚି ମୋର ରାତି ପରେ ରାତି । ମୁଁ ପୁଣି ଗୋଟାଏ ପରେ ଗୋଟାଏ contract sign କରିବାର ସ୍ୱପ୍ନ ଦେଖିବି କାହିଁକି ?

ଜୟନ୍ତ—ନା ଲଗ୍ନା, ଦିନେ ହୁଏତ ତମେ ଥିଲ କଞ୍ଚା ମାଟିର ଗୋଟାଏ ନରମ ପେଣ୍ଡୁଳା । ମୁଁ କିନ୍ତୁ ତୁମକୁ ଆଜି ଦର୍ଶନ କରିଚି ଏକ ଅସାମାନ୍ୟ ଶିଳ୍ପୀ ପ୍ରତିଭାରେ । ତୁମ ପାଇଁ ସଜେଇରଖିଚି ଏକ ବିରାଟ ଭବିଷ୍ୟତ । ସେ ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ତୁମେ ନିଜକୁ ଦୃଢ଼ କରି ଗଢ଼ିନିଅ, ଲଗ୍ନା !

ରତନା—( ବିବ୍ରତଭାବରେ ପ୍ରବେଶ କରି ) ଆଜ୍ଞା, ଏଠି ଠିଆହୋଇ ଖବରି ଚନ୍ଦ୍ର କ'ଣ ? ଶୀଘ୍ର ପୋଲିସକୁ ଖବର ଦିଅନ୍ତୁ । ଦାଣ୍ଡଦୁଆରେ, ଝରକାରେ ଆଉ କାଚ ନାହିଁ; ଡ୍ରେନ୍‌ମାଡ଼ରେ ସବୁ ଗଲାଣି ।

ଜୟନ୍ତ—ରତନା ! ଦରଓ୍ୱାନକୁ କହ, ସମସ୍ତେ ଭିତରକୁ ଆସିବା ଦରକାର ନାହିଁ । ସେମାନଙ୍କ ତରଫରୁ ଜଣେ ପ୍ରତିନିଧି ଭାବରେ ଆସି ଲଗ୍ନା ଦେବୀଙ୍କୁ ଶୁଭେଚ୍ଛା ଜଣେଇଯାଆନ୍ତୁ ।

[ ରତନା ଚାଲିଯାଇଚି ବାହାରକୁ । ଆତଙ୍କରେ ଶିହରିଉଠିଚି ଲଗ୍ନା ]

ଲଗ୍ନା—ଜୟନ୍ତବାବୁ, Please···

ଜୟନ୍ତ—ଆଚ୍ଛା, ଠିକ୍ ଅଛି । ତୁମକୁ କିଛି କରିବାକୁ ହବ ନାହିଁ । ଖାଲି ଗୋଟାଏ ଗ୍ରେଟ୍ ନମସ୍କାର and just a smile, That's all.

[ ଭିତରକୁ ପଶିଆସିଲେ ଶୁଭେନ୍ଦୁ । ଦେହରେ ଦାମୀ ସୁଟ୍, ହାତରେ ରଜନୀଗନ୍ଧାର ଗୁଚ୍ଛ ]

ଏଇ ହଉଚନ୍ତି ଆପଣମାନଙ୍କର ଲଗ୍ନା ଦେବୀ "ଅଶ୍ରୁ ପୂରବୀ" ଛାୟାଚିତ୍ରର ନାୟିକା ।

[ ଜୟନ୍ତ ବସିବାକୁ ନିର୍ଦ୍ଦେଶ ଦେଇଚି । ଶୁଭେନ୍ଦୁ ବସୁ ବସୁ ]

ଶୁଭେନ୍ଦୁ—କିଛି ଦରକାର ନାହିଁ, ଆଜ୍ଞା ! Introduction କିଛି ଦରକାର ନାହିଁ । ଏଇ ଆମେ ସମସ୍ତେ ସିନେମା ହଲରୁ ଫେରୁଚୁ । ତେଣୁ ଚିହ୍ନିବାରେ କୌଣସି ଅସୁବିଧା ନାହିଁ । ତେବେ ଗୋଟାଏ କଥା, ଯଦି କିଛି mind ନ କରନ୍ତି···

ଜୟନ୍ତ—କୁହନ୍ତୁ, କୁହନ୍ତୁ, ଆପଣଙ୍କ କଥା ଶୁଣିବାକୁ ସେ ତ ଅପେକ୍ଷା କରିଚନ୍ତି ।

ଶୁଭେନ୍ଦୁ—କଥା, ମାନେ, ଗୋଟିଏ comment କି କହିପାରେ । ( ଲଗ୍ନା ପ୍ରତି ) ଆପଣ କିଛି ମନେ କରିବେ ନାହିଁ, ଲଗ୍ନା ଦେବୀ !

ଜୟନ୍ତ—ନା ନା, ଏଥିରେ mind କରିବାର କ'ଣ ଅଛି ? ଆପଣମାନେ ତ ହେଲେ ତାଙ୍କ ପ୍ରତିଷ୍ଠାର ବନ୍ଧୁରଜ ।

ଶୁଭେନ୍ଦୁ—ଆଜ୍ଞା ! ପ୍ରତିଷ୍ଠାର ବନ୍ଧୁରଟା ହେଲିସାରିଚ । ଆମେ, ଆଜ୍ଞା, ଗୋଟେ ଗୋଟେ ଛବିକୁ ଦଶଥର ଦେଖିବାଲୋକ, blackରେ, matinee show ହଉ, Ist show ହଉ, 2nd show ହଉ । ସତ କହିବାକୁ ଗଲେ film industryକୁ ବଞ୍ଚେଇରଖିଚୁ ଆମେମାନେ ।

ଜୟନ୍ତ—ସେଇଥିପାଇଁ ତ ଆପଣମାନଙ୍କର ଶୁଭେଚ୍ଛା ଅଭିନେତ୍ରୀ ଲଗ୍ନା ଦେବୀଙ୍କ ଚଲାପଥର ସବୁଠୁ ବଡ଼ ପାଥେୟ ।

ଶୁଭେନ୍ଦୁ—ଆଜ୍ଞା, ସେ ଶୁଭେଚ୍ଛା ଆମ୍ଭମାନଙ୍କର ସବୁବେଳେ ରହିଚ, ରହିବ ଆଉ ରହିଲା । ତେବେ କହୁଥିଲି, କ'ଣ କି, film photographyଟାକୁ ବାସ୍ତବରେ ଦେଖିବାକୁ ଗଲେ ଲଗ୍ନା ଦେବୀ ଅନେକ ବେଶି ସୁନ୍ଦର ।

( ଲଗ୍ନା ଶିହରିଉଠିଚ - ନିଜର ପ୍ରଶଂସା ଇମିତି ନାଲିକୁଆବେ ଶୁଣି )

ଜୟନ୍ତ—ଆପଣ ଯାହା କହିଚନ୍ତି ସତ, ଆଜ୍ଞା, ଲଗ୍ନା ଦେବୀଙ୍କର ଯାହା glamour, ସେଥିରେ ସେ Calcutta, Bombayରେ ଯେକୌଣସି Ist class actressଙ୍କୁ beat କରିପାରିବେ । କିନ୍ତୁ ଆପଣ ଜାଣନ୍ତି, ଏ ଓଡ଼ିଆ ଛବି କରିବାକୁ ଗଲେ କି difficulty face କରିବାକୁ ପଡ଼େ ? ଓଡ଼ିଶାର ସଂସ୍କୃତି, ସାହିତ୍ୟ, ସଭ୍ୟତା ନେଇ ଛାଡ଼ିଦେବାକୁ ପଡ଼େ ଅଣଓଡ଼ିଆମାନଙ୍କ ଦୟା ଉପରେ । ସେଠାକାର studio, camera, light ଆମକୁ ଯେତେ ସହଯୋଗ କରେ ତା'ଠୁ ବେଶି କରେ ଅସହଯୋଗ । ତେଣୁ ସେଠି ସେମାନଙ୍କ ହାତରେ ଜଣେ ଅଣଓଡ଼ିଆ ଶିଳ୍ପୀର photography ନେଇ ନ୍ୟାୟ ଆଶା କରିବାଟା ଅନ୍ୟାୟ ।

ଶୁଭେନ୍ଦୁ—ମୁଁ ଜାଣେ, ଆଜ୍ଞା, ଓଡ଼ିଆ ଛବି କାହିଁକି ଭଲ ହୋଇପାରେନା । ସେକଥା କହିବାକୁ ଗଲେ ମତେ ଦୁଇଦିନ ସମୟ ଲାଗିବ ।

ଜୟନ୍ତ— ତଥାପି ମୁଁ ଆଶା କରୁଚି, ଆଗାମୀ ଛବିଗୁଡ଼ିକରେ ଆପଣ ଆପଣମାନଙ୍କର ଲଗ୍ନା ଦେବୀଙ୍କୁ ଯେମିତି ଭାବରେ ଚାହୁଁଛନ୍ତି ଠିକ୍ ସେମିତି ଭାବରେ

ଦେଖିବାକୁ ପାଇବେ । ( ଶୁଭେନ୍ଦୁ ଉପହାର ଦେବାକୁ ନିର୍ଦ୍ଦେଶ କରେ । ଜୟନ୍ତ ନିର୍ଦ୍ଦେଶ ଦେଇଚ ନିଜେ ଦେବାକୁ )

ଶୁଭେନ୍ଦୁ—ଧନ୍ୟବାଦ, କ୍ଷମା କରିବେ ଲଗ୍ନା ଦେବୀ ! ଆପଣଙ୍କର ଅନେକ ସମୟ ନଷ୍ଟ କରିଦେଲି । ଏଇ ନିଅନ୍ତୁ ଆପଣଙ୍କର ଅସାମାନ୍ୟ ପ୍ରତିଭାର ଏଇ ସାମାନ୍ୟ ଉପହାର । ( ଫୁଲତୋଡ଼ା ଦେଇ ) ଏ ଉପହାର ମୋର ନୁହେଁ, ଏ ସାରା ସହରର ଜନତାର । ମୁଁ ଆସୁଚ, ନମସ୍କାର !

[ ଶୁଭେନ୍ଦୁ ଚାଲିଯାଇଚ । ଜୟନ୍ତ ତାକୁ ବଳେଇ ଦେଇ ଫେରିଆସି ଦେଖେ ଲଗ୍ନା ଅନ୍ୟମନସ୍କା ]

ଜୟନ୍ତ— କ'ଣ ଲଗ୍ନା ! ଠିଆ ହୋଇ ରହିଲ ଯେ ? ଆରେ, ଭଦ୍ରଲୋକ ଚାଲି-ଗଲେଣି । ତମେ ମିଛରେ nervous ହଉଥିଲ । ଦେଖିଲ, ସାରା ସହରର ଜନତା ତୁମକୁ ଆଜ କମିତ ଭାବରେ ଅଭିନନ୍ଦନ କରିଗଲେ ? ( ଲଗ୍ନା ଅଶ୍ରୁସଜଳ ଆଖିରେ ହାତର ଫୁଲତୋଡ଼ାକୁ ଜୟନ୍ତର ପାଦ-ତଳେ ରଖିଦେଇ )

ଲଗ୍ନା—ଏ ଅଭିନନ୍ଦନ ମୋର ନୁହେଁ, ଇଏ ଆପଣଙ୍କର ।

ଜୟନ୍ତ—ଲଗ୍ନା ! ! ! ( ମୁହଁରେ ତୃପ୍ତି ଭରିରହିଥିଲା )



## ଦ୍ୱିତୀୟ ଦୃଶ୍ୟ

[ ସାମ୍ବାଦିକଙ୍କ ଅଳିନ୍ଦ ]

ଅଦ୍ୱୈତ—ଥାଉ, ଥାଉ, ମୋର ଅଭିନନ୍ଦନ ଦରକାର ନାହିଁ ।

ସଜୀବ—( ହାତରେ ଧରିଥିବା ଫୁଲତୋଡ଼ାକୁ ନିର୍ଦ୍ଦେଶକରି ) ଅଭିନନ୍ଦନ ଦରକାର ନାହିଁ ? ମହାପୁରୁଷଙ୍କ ପରି ନମ୍ର ନିର୍ବିକାର କଣ୍ଠରେ ଖୁବ୍ ବଡ଼ ବଡ଼ କଥା ତ କହି ଶିଖିଚନ୍ତି ? କ'ଣ, ଭାବିଚନ୍ତି, ଅଭିନନ୍ଦନଗୁଡ଼ାକ ଏତେ ଶସ୍ତା ? ଜାଣନ୍ତି, ଏ ଫୁଲତୋଡ଼ାର ଦାମ୍ କେତେ ?

ଅଦ୍ୱୈତ—କେତେ ଶୁଣେ ?

ସଙ୍ଗୀବ—ପନ୍ଦର ଟଙ୍କା । ଆଉ ମକରବା ସାହିରୁ ହଜାଘ ଗଲି ଯାଏ ରେକ୍ସା ଭଡ଼ା କେତେ ହେଲା, ହିସାବ କଲେ ! ଯିବା ଆସିବା ଓଡ଼ିଆ ରେକ୍ସାବାଲା ହେଲେ ଦେଢ଼ ଟଙ୍କା, ଆଉ ତେଲେଙ୍ଗା ହେଲେ ବାରଅଣା ।

ଅଦ୍ୱୈତ—ହେଲା, ଏବେ ବୁଝିଲି । ଆପଣ ପନ୍ଦର ଷାଠିଏ ଟଙ୍କା ଖର୍ଚ୍ଚ କରି ଆସିଚନ୍ତି । ହେଲେ, ମୁଁ କ'ଣ ଆପଣଙ୍କୁ ଅଭିନନ୍ଦନ ଦେବାପାଇଁ ଡାକି ଆଣିଥିଲି ?

ସଙ୍ଗୀବ—ଆପଣ କାହିଁକି ଡାକିବେ ? ପୃଥିବୀର ମାଧ୍ୟାକର୍ଷଣ ଶକ୍ତିରେ ଟାଣିହୋଇ ମୁଁ ମକରବା ସାହିରୁ ସିଧା ହଜାଘ ଗଲିରେ ଛିଟିକିପଡ଼ିଲି ।

ଅଦ୍ୱୈତ—ଆପଣ କି ଧରଣର ଲୋକ, ମୁଁ ତ ବୁଝିପାରୁନି ! ଚିହ୍ନା ନାହିଁ, ପରିଚୟ ନାହିଁ, ହଠାତ୍ ଆସି···

ସଙ୍ଗୀବ—ଆପଣ କି ଧରଣର ସାମ୍ବାଦିକ ତା ତ ମୁଁ ବୁଝିପାରୁନି ! ଚିହ୍ନା ପରିଚୟ ସବୁ ଥାଇ ଗୋଟେ ଅଭିନନ୍ଦନ ଗ୍ରହଣ କରିବାକୁ ପଛେଇ-ଯାଉଚନ୍ତି ?

ଅଦ୍ୱୈତ—ଚିହ୍ନା ପରିଚୟ ଥାଇ ? ତା' ହେଲେ ଆମର କୋଉଠି ଦେଖା ହୋଇଥିଲା କହନ୍ତୁ ତ ?

ସଙ୍ଗୀବ—ସିନେମା ହଲରେ, ମନେ ନାହିଁ ?

ଅଦ୍ୱୈତ—ସିନେମା ହଲରେ ? କୋଉଠି ? କେବେ ?

ସଙ୍ଗୀବ—ସେଇ ଯୋଉଦିନ 'ଅଶ୍ରୁ ପୁରସ୍କା' ଛବିଟା release ହେଲା ?

ଅଦ୍ୱୈତ—ଆପଣ ? I mean, ଆପଣ ସେଇଦିନ କଳାବଜାରରେ ଟିକେଟ ବିକି କରି ଧରାପଡ଼ିଥିଲେ ନା ?

ସଙ୍ଗୀବ—( ରାଗିଯାଇ ) ଆଜ୍ଞା, ନା । ଧଳା ପରଦାରେ ଅଭିନୟ କରୁଥିଲି ।

ଅଦ୍ୱୈତ—ଆପଣ ଅଭିନୟ କରୁଥିଲେ ?

ସଂଜ୍ଞାବ—ଆଜ୍ଞା, ହଁ ।

ଅଦ୍ୱୈତ—( ସ୍ୱାଭାବିକ ଗଳାରେ ) ଆପଣଙ୍କ ଅଭିନୟ ତ ଚମତ୍କାର ହେଉଛି !
Congratulation !

ସଂଜ୍ଞାବ—( ହଠାତ୍ ଏକ ପତ୍ରିକା ଦେଖେଇ ) କିନ୍ତୁ ଆପଣଙ୍କ କାଗଜରେ କାହିଁ,
ମୋ ନାଁରେ ପଦେ ହେଲେ ବାହାରିନି ନାହିଁ ?

ଅଦ୍ୱୈତ—( କଥାର ମୋଡ଼ ବୁଲେଇ ) ଓଃ, ନିଶ୍ଚୟ ଲେଖିଥିଲି ! ହଁ, ନିଶ୍ଚୟ
ଲେଖିଥିଲି, ମୋର ମନେ ଅଛି, ମୁଁ ଲେଖିଥିଲି···

ସଂଜ୍ଞାବ—ଲେଖିଥିଲେ କ'ଣ ମୁଁ ଆଉ ହାତରୁ ପଇସା ଖର୍ଚ୍ଚ କରି ସେ କଥା
ଆପଣଙ୍କୁ ମନେପକାଇବା ପାଇଁ ଆସିଥାନ୍ତି ?

ଅଦ୍ୱୈତ—ଆଜ୍ଞା, କଥାଟା କ'ଣ ଆପଣ ବୁଝିଲେ ନାହିଁ ? ଆମ୍ଭେମାନେ ଯାହାସବୁ
ଲେଖୁଁ ସେଗୁଡ଼ାକ କ'ଣ ସବୁ ସେମିତି ଛପା ହେଇଯାଏ ? ଆମ ଉପରକୁ
ଅଛନ୍ତି Sub Editor, ତାଙ୍କ ଉପରକୁ sectional Editor, ତାଙ୍କ
ଉପରକୁ Chief Editor. ଏ ସବୁ Scrutiny ଭିତରେ ଆପଣଙ୍କ
ନାଁଟା ଭୁଲରେ କୋଉଠି ଖସି ରହିଯାଇଛି ।

ସଂଜ୍ଞାବ—ଖାଲି ମୋ ନାଁଟା କେବଳ ଭୁଲରେ ଖସିଗଲା, ଆଉ କାହା ନାଁଟା
ଖସିଲାନି ? Hero, Heroine, Villain ଏମାନଙ୍କ ନାଁ ଖସି ନ
ଯାଇ କେବଳ ମୋ ନାଁଟା ଖସିଗଲା ? କାହିଁକିନା, ମୋ ଭୂମିକାଟା
ହେଲା ଗ୍ରୁକର "ଜଗା"—

ଅଦ୍ୱୈତ—ତା'ହେଲେ ଆପଣ କ'ଣ ଖବରକାଗଜ, ଇଚ୍ଛା କରି ଆମେ ଆପଣଙ୍କ
ନାଁଟା ଛାଡ଼ିଯାଇଛୁ ?

ସଂଜ୍ଞାବ—ନା, ସେକଥା ମୁଁ କହୁନି । ମୁଁ ଜାଣେ, ଆପଣମାନେ ବଡ଼ ନିମକହଲାଲ
ଲୋକ । ଯାହାର ଲୁଣ ଖାଇବେ, ତା'ର ଗୁଣ ନିଶ୍ଚୟ ଗାଇବେ ।

ଅଦ୍ୱୈତ—ଆଚ୍ଛା, ଏସବୁ ଆପଣ କଣ କହୁଯାଉଚନ୍ତି ? ଯଦିବା ଏଥର ନ ବାହାରିଚ, next issueରେ ବାହାରିବ । ଆପଣ ଚାହୁଁଲେ ଆପଣଙ୍କର ପୁରାପୁରି ଗୋଟାଏ life sketch ବାହାର କରିଦେଇପାରେ ।

ଫକୀର—ଆଜ୍ଞା ନା, ମୁଁ ଆପଣଙ୍କୁ ସେମିତି କିଛି ମୋଟା ରକମର ଦେଇପାରିବି ବୋଲି ଆଶା କରିବେ ନାହିଁ ।

ଅଦ୍ୱୈତ—ମାନେ ? ଆପଣ କ'ଣ ଭାବୁଚନ୍ତି ଆମେସବୁ ଟଙ୍କାପଇସା ଖାଇ ଏସବୁ କାରବାର କରୁଁ ?

ଫକୀର—ନା, କାରବାର ଆପଣମାନେ ସିଧାସଳଖ କରନ୍ତି ନାହିଁ । କିନ୍ତୁ film production ଯେଉଁ ପାଞ୍ଚ ସାତ ହଜାର ଟଙ୍କା publicityରେ ଖର୍ଚ୍ଚ ହୁଏ, ସେଥିର ଅନ୍ତତଃ twenty percent ଆପଣଙ୍କ କାଗଜକୁ ଆଉ minimum two percent ଆପଣଙ୍କ ପକେଟକୁ ନିଶ୍ଚୟ ଯାଏ । ତା'ଛଡ଼ା press conferenceର dinner, release ଦିନର ଫୁଲମାଳ, Heroineଙ୍କ କୋମଳ ହାତର hand shake—ଏ ସବୁ ପରେ ଆଉ କ'ଣ ଜମକଦାରହିଁ କରିହୁଏ ?

ଅଦ୍ୱୈତ—ଆପଣ ଇମିତି ଅଭଦ୍ର ଭାବରେ କ'ଣ କହୁଯାଉଚନ୍ତି ? ଆପଣ କ'ଣ ଭାବୁଚନ୍ତି ମତେ ? ଆପଣ ଏଠୁ ଗଲେ !

ଫକୀର—କ'ଣ ସତ କଥାଟା କହିଦେଲି ବୋଲି ? ହେଲେ ମୁଁ ବାହାରିଯିବାକୁ ଆସିନାହିଁ । ମୁଁ ଆସିଚି ଆପଣଙ୍କୁ ନିମନ୍ତ୍ରଣ କରିବାକୁ ।

ଅଦ୍ୱୈତ—କ'ଣ ମାଛ ଖାଇବାକୁ ନିମନ୍ତ୍ରଣ ?

ଫକୀର—ନା, ମୁଁ ସେମିତି ଗୁଣ୍ଡା ବଜାରି ଲୋକ ନୁହେଁ । ମୋ ଚେହେରା ଦେଖି ଆପଣ ସିମିତି ଧାରଣା କରିବେ ନାହିଁ । ବୁଝିଲେ, ମୁଁ ସ୍ୱାର ପ୍ରତିଶୋଧ ନଉଚି । କିମିତି ଜାଣିଚନ୍ତି ? ନିଜେ ଗୋଟାଏ film produce କରିବି ଆଉ ଚାକର role ନୁହେଁ, Hero. ଆଶାକରେ ଆପଣ ଏଥର ମୋ ପଛରେ ଦୌଡ଼ିବାକୁ ଆରମ୍ଭ କରିବେ । ହଉ, ଆସୁଚି ।

( ରାଗରେ ଚାଲିଗଲା )

ଅଦ୍ୱୈତ— ଓଃ, କି ମୁସ୍କିଲ ! ଝିଅ ବାହା ନାଁରେ ବ'ପଦ ଲେଖିଲ, ମାଡ଼ । ବାହା ନାଁରେ ନ ଲେଖିଲେ ବି ମାଡ଼ ! Lord ଜଗନ୍ନାଥ ! ସାମ୍ବାଦିକ ଗ୍ରକିରି ଛଡ଼ା ମୋ ପାଇଁ କ'ଣ ଆଉ କୋଉଠି vacancy ନାହିଁ ? ନା, ଗ୍ଡ଼ିଦେବି । ହଁ, ହଁ, ଛାଡ଼ିଦେବି । ( ପଶିଆସିଚ ଶୁଭେନ୍ଦୁ ବିବ୍ରତ ହୋଇ )

ଶୁଭେନ୍ଦୁ— ହଁ, ଯେତେ ଶୀଘ୍ର ପାରନ୍ତି, ଆପଣ ଏ portfolio ଗ୍ଡ଼ିଦିଅନ୍ତୁ ।

ଅଦ୍ୱୈତ—ଆପଣ କିଏ ? ସାହସ ତ ଦେଖୁଚ କିଛି କମ୍ ନୁହେଁ !

ଶୁଭେନ୍ଦୁ—କମ୍ ହବାର ତ କିଛି କାରଣ ନାହିଁ । କାରଣ ଖୋସାମଦ କରି "ଗ୍ରସ୍ଥାଲିପି" ପତ୍ରିକାରେ ମୁଁ ମୋ ଫଟୋ ଛପେଇବାକୁ ଆସିନି, କି ଖିଲ୍ଲୀ ପରିଚୟ କଲମରେ ମୋତେ ଟେକିକରି ବ'ପଦ ଲେଖିବାପାଇଁ ଅନୁରୋଧ କରିବାକୁ ଆସିନି ।

ଅଦ୍ୱୈତ— ତା' ହେଲେ କ'ଣ ମୋ office inspection କରିବାକୁ ଗ୍ଲ-ଆସିଲେ ?

ଶୁଭେନ୍ଦୁ—ନା, ଆପଣଙ୍କୁ ମୁହାଁମୁହିଁ ବ'ପଦ ମିଠାକଡ଼ା ଶୁଣେଇଯିବାକୁ । ମୁଁ ପଗ୍ରେ ପୂଜା ସଂଖ୍ୟା "ଗ୍ରସ୍ଥାଲିପି" ପତ୍ରିକାର ପ୍ରଶ୍ନ ଉତ୍ତର ବିଭାଗରେ ଆପଣ କ'ଣସବୁ ଲେଖିଚନ୍ତି, ଯୋଉଥି ପାଇଁ ଆମ କ୍ଲବରେ ଲଙ୍କାକାଣ୍ଡ ?

ଅଦ୍ୱୈତ—କିନ୍ତୁ ଏ ଲଙ୍କାକାଣ୍ଡର କାରଣଟା ଜାଣିପାରିଲିନି ।

ଶୁଭେନ୍ଦୁ— ସବୁ ଲଙ୍କାକାଣ୍ଡର ମୂଳରେ ସୀତାଦେବୀ । ଲଗ୍ନା ଦେବୀଙ୍କୁ ନେଇ ଆପଣ ଯୋଉସବୁ ପ୍ରଶ୍ନଉତ୍ତର ପୂଜାସଂଖ୍ୟାରେ ଗ୍ରପିଚନ୍ତି, ସେଥିରୁ ସତ କେତେ ଆଉ ମିଛ କେତେ, କହିପାରିବେ ?

ଅଦ୍ୱୈତ—ଦେଖନ୍ତୁ ଆଜ୍ଞା, ଆଜିକାଲି ଯୁଗ ଏକଦମ ବଦଳିଗଲାଣି । ଏବେ ଆଉ ଖାଣ୍ଟି ଘିଅରେ ଭେଜାଲ ମିଶା ହଉନି । ବରଂ ଡାଲ୍‌ଡାରେ କିଛି ଖାଣ୍ଟି ଘିଅ ମିଶା ହଉଚି । ଠିକ୍ ସେମିତି ଦୁଧରେ ପାଣି ମିଶୁନି, ପାଣିରେ ଦୁଧ ମିଶା ହଉଚି । ଏଇ ତ ଆମର ଯୁଗ !

ଶୁଭେନ୍ଦୁ ସେମିତି କିଛି bluff ମାରିବାର ଚେଷ୍ଟା କରନ୍ତୁନି । ମୋର କହିବାର କଥା, ଆପଣ ଯଦି ଲଗ୍ନା ଦେବୀଙ୍କର ବୟସ ନେଇ ସଠିକ ଖବର ନ ଜାଣନ୍ତି, ତେବେ ଆପଣଙ୍କ କାଗଜରେ ଆପଣ ସେ ସମ୍ପର୍କରେ ଅଜ୍ଞ ବୋଲି ଲେଖିଥିଲେ ଭଲ ହୋଇଥାନ୍ତା । ଅଥଚ କିଛି ନ ଜାଣି ଆପଣ ଲଗ୍ନା ଦେବୀଙ୍କର ବୟସ ୭ ବର୍ଷ ବୋଲି ଲେଖିଦେଇଚନ୍ତି ?

ଅଦ୍ୱୈତ—ହଉ, ଆଜ୍ଞା ! ମାନିନେଲି ମୁଁ ଆଜ୍ଞା । ହେଲେ ଆପଣଙ୍କ ଭଳିଆ ଅଭିଜ୍ଞ ଲୋକଙ୍କ ମୁହଁରୁ ସଠିକ ଖବର ଟିକିଏ ଶୁଣିଥାଏଁ ।

ଶୁଭେନ୍ଦୁ—ସତର, ଅର୍ଥାତ୍ sweet seventeen !

ଅଦ୍ୱୈତ—( ଆଶ୍ଚର୍ଯ୍ୟରେ ) କ'ଣ ଆଖିରେ ଦେଖିବାକୁ ନା ଜାତକରୁ ?

ଶୁଭେନ୍ଦୁ—ବାଜେ କଥା ବକନ୍ତୁ ନାହିଁ । ଲଗ୍ନା ଦେବୀଙ୍କ ଖବର ମୁଁ ଆପଣଙ୍କଠୁ ଢେର ବେଶି ଜାଣେ ।

ଅଦ୍ୱୈତ—ହେଲେ ଗୋଟେ କଥା ଜାଣନ୍ତୁନି, ଆଜ୍ଞା !

ଶୁଭେନ୍ଦୁ—କ'ଣ ?

ଅଦ୍ୱୈତ—ଚଳଚ୍ଚିତ୍ରତାରକାମାନଙ୍କର ବୟସ ଆଉ ଚଳିତ ବର୍ଷର calendarଟା କେବେ ପୁରୁଣା ହୁଏନି । ତା'ର ପୃଷ୍ଠା କେବେ ଓଲଟେ ନାହିଁ । ଆଉ ତା'ଛଡ଼ା ଓଲଟାଇବା କେବେ ଦରକାର ପଡ଼େ ନାହିଁ ।

ଶୁଭେନ୍ଦୁ—ମାନେ ?

ଅଦ୍ୱୈତ—ମାନେ, ସେମାନେ ସବୁଦିନେ ଷୋଡ଼ଶୀ ଆଉ କୁମାରୀ । ତେଣୁ ସେ କ'ଣ ବିଷୟ ନେଇ ମୋ ସାଙ୍ଗରେ ଯୁକ୍ତିତର୍କ କରିବା ନିହାତି ବୋକାମି । ( ନିଜ ବ୍ୟାଗ୍‌ରୁ ଗୋଟାଏ ନିମନ୍ତ୍ରଣ ପତ୍ର ବାହାର କରି ଦେଖେଇ ) ବରଂ ଆସନ୍ତୁ, ଆପଣମାନଙ୍କ କହିବାନୁସାରେ ଆମେ ସମସ୍ତେ ମିଶି ଏ ବର୍ଷ କୁମାରୀ ଲଗ୍ନା ଦେବୀଙ୍କର ସପ୍ତଦଶ ଜନ୍ମତିଥି ପାଳନ କରିବା ।



## ତୃତୀୟ ଦୃଶ୍ୟ

[ ହୋଟେଲ । ଏକ ସୁସଜ୍ଜିତ କକ୍ଷ । ମଝିରେ ଟେବୁଲ ଉପରେ ଫୁଲଦାନୀ ; ତା ମଝିରେ ବଡ଼ କେକ୍ । ତା' ଚାରିପଟେ ୧୭ଟି ମହମବତୀ ଜଳୁଛି । ଉପରୁ ବେଲୁନ୍ ଆଉ କାଗଜଫୁଲର ଧାଡ଼ି ଲମ୍ବି ଆସିଛି । ଟେବୁଲ ନିକଟରେ ଠିଆ ହୋଇଛି ଲଗ୍ନା । ତାକୁ ଘେରି ଛିଡ଼ା ହୋଇଛନ୍ତି ଚଳଜଗତର ଅନେକ କଳାକାର—ସଜୀବ, ସଞ୍ଜୀବ, ଅଦ୍ୱୈତ, ରଚନା ଇତ୍ୟାଦି । ପଛରେ orchestraର ଗୁଞ୍ଜ ଶୁଭୁଛି । ଦୃଶ୍ୟ ଆରମ୍ଭରେ ସଞ୍ଜୀବ ମାଇକ୍ ଧରି କହୁଛି…]

ସଞ୍ଜୀବ— ବର୍ତ୍ତମାନ ଆପଣମାନଙ୍କ ତରଫରୁ ମୁଁ ଚଳଜଗତର ବସ୍ନସ୍ଥ ଶ୍ରୀମାଶ୍ରୀ ଲଗ୍ନା ଦେବୀଙ୍କୁ ଆଜିର ଏ ଶୁଭଦିନରେ Birthday cake କାଟିବାକୁ request କରୁଛି ।

[ ସମବେତ ତାଳି ଭିତରେ ଲଗ୍ନା କେକ୍ କାଟିଲା । ଅନ୍ୟ ଏକ ଝିଅ କେକ୍‌ର ଗୋଟେ ପିସ୍ ଲଗ୍ନା ମୁହଁରେ ଦେଲା । ଲଗ୍ନା ମଧ୍ୟ ସେ ଝିଅ ମୁହଁରେ ଖଣ୍ଡିଏ ଦେଲା । ଏତିକିବେଳେ ଆସିଚନ୍ତି, ଅଦ୍ୱୈତ । ହାତରେ କ୍ୟାମେରା । ଲଗ୍ନାର କେକ୍ କଟା ଭିତରେ ଅଦ୍ୱୈତ ବଡ଼ ଅସ୍ତବ୍ୟସ୍ତ ହୋଇ ଲଗ୍ନା ଆଡ଼କୁ ଫଟୋର ଲେନ୍ସ ରଖି କହିଲେ ]

ଅଦ୍ୱୈତ—Just a minute, ଲଗ୍ନା ଦେବୀ, Just a minute !

( କହୁ କହୁ ଫଟୋ ଉଠାଇନେଲେ )

ସଞ୍ଜୀବ—ଆରେ, ଅଦ୍ୱୈତ ବାବୁ ! ଆପଣ କୋଉଠି ପଛରେ ପଡ଼ିଗଲେ ?

ଅଦ୍ୱୈତ—ମୁଁ ପଛରେ ପଡ଼ି ଯାଇ ନ ଥିଲି, ଆଜ୍ଞା, Town busଟା ଆଗେଇ-ଗଲା ।

ଲଗ୍ନା—ଆଗେଇଗଲା, ମାନେ ?

ଅଦ୍ୱୈତ—ମାନେ, Jail gateରେ ଓହ୍ଲେଇବା କଥା । ହେଲେ, କ'ଣ କରିବ ? ଅସମ୍ଭବ ଭିଡ଼ । ଠେଲିପେଲି ମୋ ଭଳିଆ ଲୋକ ବାହାରିଲାବେଳକୁ ଦେଖେଁ ତ ବାଙ୍ଗାବଜାର ଗଳିମୁଣ୍ଡରେ···

ସଞ୍ଜୀବ—ଆଜ୍ଞା, ticketଟା କାଟିଥିଲେ ନା without ?

ଅଦ୍ୱୈତ—ଆଉ କାଟିପାରିଲି କୋଉଠୁ, ଆଜ୍ଞା, ବାଦୁଡ଼ି ଭଳି ଝୁଲି ଝୁଲି ଆସିବା କଥା ! ତା ଭିତରେ ଆଉ ପକେଟକୁ ହାତଟା ଗଲେ ତ ?

( ସମବେତ ହସ ଓ ତାଳି )

[ ଏତିକବେଳେ ଶୁରେନ୍ଦ୍ର ହାତରେ ଫୁଲତୋଡ଼ା ଧରି ଆସିଲା ]

ଶୁରେନ୍ଦ୍ର—Happy birthday, ଲଗ୍ନା ଦେବୀ ! ( ଫୁଲ ଦେଲା ) Wish you a happy day । ( ତାଳି )

ସଞ୍ଜୀବ—ଆଜି ଏ ଉତ୍ସବମୁଖରିତ ଶୁଭ ସନ୍ଧ୍ୟାର last item କୁମାର ରଘୁନାଥଙ୍କର ସୁଲଳିତ କଣ୍ଠ ଆଉ କୁମାରୀ ଉଷା ଦେବୀଙ୍କର ଛନ୍ଦମୟୀ ଲାସ୍ୟ । ( ପୁଣି ତାଳି )

[ ପରେ ପରେ ଗୀତ ନାଟ୍ୟ ଆରମ୍ଭ ହେଲା ଏବଂ ପରିବେଶକୁ ଆହୁରି ମଧୁମୟ କଲା ]

—ଗୀତ—

ଝିଲ୍‌ମିଲ୍ ଏଇ ତାସ ସରରେ
ଚୁପ୍ ଚୁପ୍ ଛପି ଆସ ସାଥୀରେ
ଏଇ ଓଠର ନୂଆ ପାଖୁଡ଼ା
ଚୁମି ଚୁମି ଯା'ରେ······
ହ୍ୟାପି ବାର୍ଥ ଡେ ଟୁ ୟୁ··
ଦେହ ଭିତରେ ଢେଉଁ ଢେଉଁ
ଭସି ବସନ୍ତେ ଭସି ଦେଇ
ନୀଳ ଆକାଶେ ଗୁଞ୍ଜି ସମାନେ
ଉଡ଼ି ଉଡ଼ି ଆ···ରେ···ହୋ···
Happy birth day to you···(୧)

ଜହ୍ନ ସେପାଖରେ ଘର ବର
ମନ ମାଣିକ ମୋଡ଼ଇବ
ଆମେ ଭୁଲିବା ଏଇ ଦୁନିଆ
ଲୁଚ ଲୁଚ ଆ···ରେ···ହୋ···ହୋ···
Happy birth day to you···(୨)

ସମସ୍ତେ—ନାଚ ଓ ଗୀତ ଶେଷରେ Wonderful, wonderful !
Cheers for କୁମାରୀ ଉଷାଦେବୀ and ରଘୁ ।

( ସମସ୍ତେ ଚାଲିଗଲା ପରେ ଆସିଚ ଜୟନ୍ତ )

ଜୟନ୍ତ—I am so sorry, ଲକ୍ଷ୍ମୀ ! ( ଫୁଲତୋଡ଼ା ଦେଇ ) କ'ଣ କରିବ, କୁହ ? ଜଣେ ନୂଆ Financierଙ୍କୁ tap କରୁଚ । ଝୋଟ କାରବାର କରିବା ଲୋକ ସେମାନେ, show business କ'ଣ ବୁଝିବେ ? ଯାହାହଉ, ତଥାପି ମନେହେଉଚ, ଲୋକଟା ଟୋପ ଗିଳିବ । ଆଉ କ'ଣ କିଛି ଅସୁବିଧା ହୋଇନ ତ ? ଆଉ ସାମ୍ବାଦକମାନଙ୍କୁ ଠିକ୍ ଭାବରେ receive କରିଚ ? ସମସ୍ତେ ଚାଲିଗଲେଣି ?

ଲଗ୍ନା—ହଁ, ନାଟକ ସରିଗଲା; ଆଉ କାହିଁକି ରହିବେ ? ( record ବନ୍ଦ କଲା )

ଜୟନ୍ତ—ନାଟକ ?

ଲଗ୍ନା- ବୁଝିେ ଆଉ କ'ଣ ? ମତେ ଯେତେବେଳେ ସତେଇଶ ବର୍ଷ, ଆପଣ ସେତେବେଳେ ମୋର ସତର ବର୍ଷର Birth day celebration କରିଚନ୍ତି, ଆଉ ମୁଁ ନଜେ ବି ସେଥିରେ ମହମବତୀ ଜାଳୁଚି, cake କାଟୁଚି ସମସ୍ତଙ୍କ ଜଣେଇଚି ଶୁଭେଚ୍ଛା ଆଉ ଅଭିନନ୍ଦନ ! ସ୍ପ୍ଲେଣ୍ଡ୍ ବଳି ସୁନ୍ଦର ନାଟକ ଆଉ କ'ଣ ହେଇପାରେ ?

ଜୟନ୍ତ—ଇମିତି କରିବାକୁ ହୁଏ, ଲଗ୍ନା ! Film ଜଗତରେ ଏଗୁଡ଼ାକ ହେଲା secret. ଏଥିରେ ଆଶ୍ଚର୍ଯ୍ୟ ହବାର କ'ଣ ଅଛି ?

ଲଗ୍ନା—ହଁ, ସତରେ ଆଶ୍ଚର୍ଯ୍ୟ ହବାର କିଛି ନାହିଁ । ଆପଣଙ୍କର ଚ୍ଛାୟାଛବି ଜଗତରେ ସବୁ କିଛି ସମ୍ଭବ । ଛବିରେ ଆପଣ କୁମାରୀମାନଙ୍କୁ ବୋହୂ ସଜେଇ ଦେଇପାରନ୍ତି । ସନ୍ତାନହୀନାଙ୍କଠାରେ ଦେଖାନ୍ତି ମାତୃହୃଦର ମମତା । କିନ୍ତୁ ବାସ୍ତବ ଜୀବନରେ ଆପଣମାନେ ଯେ ଜଣକର ମିଛ ଜନ୍ମଦିନ ପାଳନ କରିପାରନ୍ତି, ମୁଁ ଏ କଥା ଭାବି ନ ଥିଲି ।

ଜୟନ୍ତ—Don't mind' ଲଗ୍ନା ! ତୁମକୁ ଦେଖିଲେ କେହି ସତରରୁ ବେଶି ଭାବିବେ ନାହିଁ । ସପ୍ତଦଶୀର ରୂପ ଲାବଣ୍ୟ ଐଶ୍ୱର୍ଯ୍ୟ ନେଇ ସତରେ ତୁମେ ସେଇ ବିଖ୍ୟାତ ଇଂରେଜ କବିଙ୍କ ବାଣୀକୁ ସାର୍ଥକ କରିଚ—A Lady is as old as she looks.

ଲଗ୍ନା—ଏସବୁ ମିଛ ପାଗଳାମୀରୁ କ'ଣ ମିଳେ ?

ଜୟନ୍ତ—ଲୋକଙ୍କୁ ପାଗଳ କରିବାପାଇଁ କିଛିଟା ପାଗଳାମୀ ଦରକାର, ଲଗ୍ନା !

ଲଗ୍ନା—କିନ୍ତୁ ଆପଣଙ୍କ ପାଗଳାମୀର ଖେଳନା ହବାକୁ ଯାଇ ମୋର କି ଅବସ୍ଥା ହଉଚି, ଜାଣିଚନ୍ତି ? ସେ ଦିନ Studioରୁ ଫେରିବା ବାଟରେ ଚୁଡ଼ି କିଣିବାପାଇଁ ଗୋଟାଏ ଦୋକାନକୁ ପଶିଗଲି । ତା'ପରେ ଯାହା ହେଲା···

ଜୟନ୍ତ—ନ ଜାଣିକି ବି ବେଶ୍ ଅନୁମାନ କରିପାରୁଛି । ଦୁଇ ମିନିଟ ଭିତରେ ଦୋକାନରେ ଭାଙ୍ଗିରେ ଚ'ଣ ଲୋକ ଜମିଯାଇଥିବେ । ସେଇଠୁ ପାଟିତୁଣ୍ଡ, ଠେଲାପେଲା, ଇଟାପଥର, ପୋଲିସ tear gas, ଏଇ ନା ?

ଲଗ୍ନା—ପୁଣି ଦୁଇ ଘଣ୍ଟା ମତେ ଦୋକାନ ଭିତରେ ଆଶ୍ରୟ ନବାକୁ ପଡ଼ିଲା !

ଜୟନ୍ତ—Police custodyରେ ଆସିଥିବ ନିଶ୍ଚୟ ?

ଲଗ୍ନା—ହଁ, ଆସିଲାବେଳେ ଦୋକାନୀ ହାତ ଯୋଡ଼ି କହିଲା, 'ଦୟା କରି ଆପଣ ଆଉ ଦୋକାନଆଡ଼େ ଆସିବେନି ।'

ଜୟନ୍ତ—Exactly ! ତୁମର ଯାହା ଦରକାର, କହିଲେ ସେମାନେ ଘରେ ଆଣି ଦେଇଯିବେ । ତୁମର ଯୋଉଟା ପସନ୍ଦ ବାଛିନବ ।

ଲଗ୍ନା—ଖାଲି ସେତିକି ନୁହେଁ, Police Inspector କହିଲେ, 'ଆପଣ ଇମିତି ଖବରରେ ରାସ୍ତାକୁ ନ ବାହାରିଲେ ଭଲ ହବ । ଅନ୍ତତଃ ଆମେମାନେ ଟିକେ ଶାନ୍ତିରେ ନିଃଶ୍ୱାସ ମାରିବୁ ।

ଜୟନ୍ତ—Cheer you ! ଏତିକି ଦରକାର ଲଗ୍ନା, ଏତିକି ଦରକାର । ଆଜି ମୁଁ feel କରୁଛି, ତୁମକୁ ନେଇ ଯୋଉ ସ୍ୱପ୍ନ ମୁଁ ଦେଖୁଥିଲି, ତାହା ସାର୍ଥକ ହେଉଛି । ତୁମେ ଏହାକୁ ପାଗଳାମୀ କହିପାର; ହେଲେ, ମୁଁ feel କରୁଛି, ସହରେ ତୁମକୁ introduce କରି କରି ସେମାନଙ୍କୁ ମୁଁ ପାଗଳ କରିପାରିଛି । ଆଜି ଏଇ ବଡ଼ିଆ ସାଜସଜ୍ଜା ନେଇ Birth day party କେବଳ ତୁମର publicity ପାଇଁ···

ଲଗ୍ନା—ଥାଉ, ସେମାନଙ୍କ ପାଗଳାମୀକୁ ଆପଣ ଏକା ଏକା enjoy କରନ୍ତୁ । ମତେ ସେଥିରୁ ଲାଗ ଦିଅନ୍ତୁ ନା । (ବିରକ୍ତ ହୋଇ ଚାଲିଯାଉଥିଲା)

ଜୟନ୍ତ—ଆରେ ଲଗ୍ନା, ଚାଲିଯାଉଛ ? ନୂଆ Financierଙ୍କୁ ଡାକିଛି ଯେ !

ଲଗ୍ନା—ହଁ, ମନେ ରହିଲା । ଖୁବ୍ ରାଜି ହୋଇ ପାରିବ ତ ? ନ ହେଲେ ଆପଣ କହିବେ, 'ମୋ business ମାଟି କରିଦେଲ···'

ଅନ୍ଧକାରର ପୂର୍ବଶ୍ରୀ

ଜୟନ୍ତ—ଲଗ୍ନା, ମୁଁ ଦେଖୁଛି, ଏ ନୂଆ ଜୀବନ ନେଇ ତୁମେ ସତେ ବଡ଼ ବ୍ୟସ୍ତ । But this is the minimumprice every star will have to pay for glamour.

ଲଗ୍ନା—ଆପଣଙ୍କ ସହାନୁଭୂତି ପାଇଁ ଧନ୍ୟବାଦ !

( ଲଗ୍ନା ଚାଲିଗଲା । ପ୍ରବେଶ କରୁଛି ରତନା )

ରତନା—ଆଜ୍ଞା, ଜଣେ କିଏ ଆସିଚନ୍ତି ।

ଜୟନ୍ତ—ଆଜଯାଏ କଥା କହି ଶିଖିଲୁ ନାହିଁ ? ଆରେ କିଏ ବାବୁ ? ନାଁ କ'ଣ ? card ନାହିଁ ?

ରତନା—ଆଜ୍ଞା, କାର୍ଡ଼ ଫାର୍ଡ କିଛୁ ଦେଇନାହାନ୍ତି ।

ଜୟନ୍ତ—ଦେଖିବାକୁ କମିତି ?

ରତନା- ଆଜ୍ଞା, ବେଢ଼େ ମଣିଷଟାଏ···ଜଣେ ! ମାରୱାଡ଼ି···

ଜୟନ୍ତ—ଆରେ, ସିଏ ! ଓ, ମୋର ନୂଆ financier ! ଯା, ଯା, ଡାକିଆଣ୍ ।

ରତନା—ଆଜ୍ଞା, ମୁଁ ଡାକିଲି । ହେଲେ ସେ କ'ଣ ଉଠିପାରୁଚନ୍ତି ? ସିଢ଼ିରେ ଉଠୁ ଉଠୁ ମଝିରେ ଅଟକିଯାଇ ମୁଁ···ମୁଁ···ମୁଁ ଆଉ ତଳକୁ ଯାଇପାରୁଚନ୍ତି ନା ଉପରକୁ ଉଠିପାରୁଚନ୍ତି ? ଖାଲି ମୁଁ···ମୁଁ···ମୁଁ···

ଜୟନ୍ତ—Stopit, idiot ! ତାଙ୍କ ହାତ ଧରି ଧୀରେ ଧୀରେ ଉଠେଇ ଆଣିପାରିଲୁ ନାହିଁ ?

ରତନା—ତାଙ୍କ ହାତ ଧରିଲେ ମୁଁ ତାଙ୍କୁ ଉପରକୁ ଆଣିବି ନା ସେ ମତେ ତଳକୁ ଟାଣିନେବେ ?

ଜୟନ୍ତ—Idiot, ଆ ମୋ ସାଙ୍ଗରେ ! ( ସେଠଜୀ ପ୍ରବେଶ କଲେ ଅଣନିଃଶ୍ୱାସୀ ହୋଇ ) ଆସନ୍ତୁ ! ଆସନ୍ତୁ । ( ରତନାକୁ ) ଅନେଇଚୁ କ'ଣ, ବୋକା ? Fanଟା ଖୋଲିଦେଇ ଯା ! ଗ୍ଲାସରେ ପାଣି ଆଣ୍ ! I am so sorry, ଆପଣ ଏଠାକୁ ଆସି ଇମିତି ଅସୁବିଧାରେ ପଡ଼ିବେ ବୋଲି ଜାଣିଥିଲେ···

ରହନା, ଫୋନ୍‌ଟା ସେ ଘରୁ ଆଣ୍ ତ ! ମୁଁ Professor, Medicineଙ୍କୁ ଫୋନ୍ କରେଁ ।

ସେଠଜୀ—କ୍ୟା ? ବଡ଼ା ଡାକ୍ତର ? ଷୋଳ ରୁପେୟା ?

ଜୟନ୍ତ—ହଁ, ନ ହେଲେ ଏବେ ଆପଣଙ୍କ ପାଇଁ କିଛି ଟଙ୍କା ଖର୍ଚ୍ଚ ହେଲା…

ସେଠଜୀ—ନେହିଁ, ନେହିଁ, କୋଇ ଜରୁରତ୍ ନେହିଁ । ମୈ ବିଲ୍‌କୁଲ୍ ଅଚ୍ଛା ହୁଁ । ଆଚ୍ଛା, ଜୟନ୍ତବାବୁ, ମେରେ ଲିୟେ ଯୋ ଷୋଳ ରୁପେୟା ଖର୍ଚ୍ଚା କିୟାଥା, ଆପନ୍ ଓ ଆପ୍‌କା companyକା ହିସାବ୍‌ସେ ହୋଗା, ୟା ମେରେ ପକେଟ୍‌ସେ ?

ଜୟନ୍ତ—ନିଶ୍ଚୟ, companyର accountରୁ !

ସେଠଜୀ—ଏମିତି ଫାଲ୍‌ତୁ ଖର୍ଚ୍ଚା କରି ତମେ ଓଡ଼ିଆ filmରେ ନୋକ୍‌ସାନ ପହଞ୍ଚାଉଛ । ହମ୍‌କୋ ୟେ ସବ୍ ବିଲ୍‌କୁଲ୍ ପସନ୍ଦ ନେହିଁ ।

ଜୟନ୍ତ—କିନ୍ତୁ ହଠାତ୍ ଯଦି ଆପଣଙ୍କର ଦେହଟା ଖରାପ ହୋଇଗଲା, ଡାକ୍ତର ଡାକିବାଟା କ'ଣ ଅନ୍ୟାୟ ହବ ?

ସେଠଜୀ—ଦେଖିୟେ, ଜୟନ୍ତବାବୁ ! ହମେ ଯଦି ଆପ୍‌କା ସାଥ୍ business କରେଙ୍ଗ, ଜରୁର ହପ୍ତାମେ ଏକବାର୍ ଦୋ'ବାର୍ ଆନା ଯାନା ରହେଗା । ଏ ସିଡ଼ି ବି ହମ୍‌କୋ ଖୋଦ୍ ଉଠିବାକୁ ପଡ଼ିବ । ହର୍‌ରୋଜ୍ ଆପନ୍ ବଡ଼ା ଡାକ୍ତର ବୁଲାଇବ । କମ୍ପାନିକା ସବ୍ ରୁପେୟା ଓ ବଡ଼ା ଡାକ୍ତରକା ପକେଟ୍‌ମେ ଚଲାଯାଏଗା । ଔର୍ film ବନିବ ଥୋଡ଼ି…

ଜୟନ୍ତ—Exactly, ସେଠଜୀ ! ମୁଁ ଠିକ୍ ଆପଣଙ୍କ ଭଳିଆ ଲୋକଙ୍କୁ ଖୋଜୁଥିଲି । ଆମର film industryରେ ଆପଣଙ୍କ ପରି ପକା ଲୋକ ଦରକାର, ଯେ, କି ଖର୍ଚ୍ଚ କମେଇବା ଦିଗରେ practical idea ଦେବ ।

ସେଠଜୀ—ଓ ହମ୍ ଜରୁର କରେଗା । ମେରେ ହାତ୍‌ମେ ଆପ୍ ସବ୍ ହିସାବକିତାବ ଛୋଡ଼୍ ଦି ଜାଏ ! ଔର ଦେଖିୟେ, ମୈ ଏକ ଲାଖ୍‌କା କାମ୍ ଦଶହଜାର ମେ କର୍‌ଚୁକା ହୁଁ ।

ଜୟନ୍ତ—ଆପଣଙ୍କ ଏ business ଆଉ ତା'ର percentage ବିଷୟରେ ସବୁ କହି ସାରିଚି, ସେଠଜୀ ! ଆପଣ ଖାଲି ଆପଣଙ୍କର shareଟା bankରେ deposit କରିବାର ବ୍ୟବସ୍ଥା କରିଦିଅନ୍ତୁ ।

ସେଠଜୀ—ମୈନେ ତୋ ବୋଲ୍ ଦିୟା, ଆପ୍‌କେ ଲିୟେ ପଚ୍ଚିଶ ହଜାର ମେରେ ପାଶ୍ ମଉଜୁଦ୍ ହୈ !

ଜୟନ୍ତ—ଖାଲି ମଉଜୁଦ୍ ଥିଲେ ତ ହବ ନାହିଁ ! ସେଇଟା companyର accountକୁ ଆପଣଙ୍କର transfer କରିବା ଦରକାର ।

ସେଠଜୀ—ହୋଇ ବାତ୍ ନେହିଁ । ଲେକିନ୍ ହମ୍ ଦୋନୋକା agreement ପକ୍‌କା ହୋ ଯାନା ଚାହିଏ...

ଜୟନ୍ତ—ସେ ତ draft ହୋଇ ରହିଚି । ଆପଣଙ୍କୁ ଖାଲି sign କରିବାକୁ ପଡ଼ିବ । ଲଗ୍ନା, ମୋ penଟା ନେଇଆସିଲ ! Please !

( agrement ଦେଖାଇଲେ

ସେଠଜୀ—ଏ ତ ସବ୍ ଅଙ୍ଗରେଜ ହୈ ! ହମ୍‌କୋ ଥୋଡ଼ା ହମାରା ଓକିଲ-ସାହେବକୋ ଦେଖାନା ପଡ଼େଗା ।

ଜୟନ୍ତ—Companyର Advocate ସ୍ୱାଙ୍କୁ draft କରିଚନ୍ତି । ଆପଣ କ'ଣ ଅବିଶ୍ୱାସ କରୁଚନ୍ତି, ସେଠଜୀ ?

ସେଠଜୀ—ନେହିଁ, ନେହିଁ, ଜୟନ୍ତବାବୁ ! ଆପ୍‌ସେ ମେରା କୋଇ ଅବିଶ୍ୱାସ ନେହିଁ । ଲେକିନ୍ ଏ business ହୈ । ହର୍ ବାତ୍ ପକ୍‌କା କରନା ଚାହିଁଏ ।

[ ଲଗ୍ନା ପ୍ରବେଶ କଲା ଅପୂର୍ବ ସାଜସଜ୍ଜାରେ ପରିହିତା ପରି ହୋଇ ]

ଲଗ୍ନା—ଆପଣ ପେନ୍ ମାଗିଥିଲେ ନା ? ନିଅନ୍ତୁ ।

ଜୟନ୍ତ—Many thanks, ଲଗ୍ନା ଦେବୀ ! କଲମଟା exactly ମୋର ଦରକାର ନ ଥିଲା ; ଦରକାର ଥିଲା ସେଠଜୀଙ୍କର ।

ଲଗ୍ନା—ନିଅନ୍ତୁ ସେଠଜୀ !

ଜୟନ୍ତ—I am so sorry, ଲଗ୍ନା ! ମୁଁ ତୁମକୁ ସେଠଜୀଙ୍କ ସାଙ୍ଗରେ ପରିଚୟ କରାଇଦିଏଁ । ସେ ହେଉଛନ୍ତି ମୋ ଛବିର ନୂଆ ଫାଇନାନ୍‌ସିଅର—ଅମରଚାନ୍ଦ କିଶୋରୀ ଲାଲ । ମସ୍ତବଡ଼ businessman ! ଆଉ, ସେଠ୍‌ଜୀ, ସେ ହେଉଛନ୍ତି ମିସ୍ ଲଗ୍ନା ଦେବୀ, ଯାହାଙ୍କୁ ଆପଣ ଓଡ଼ିଆ ଛବି 'ଅଗ୍ନିପୁରୀ'ରେ ଦେଖିଛନ୍ତି ।

ସେଠଜୀ—ଆରେ, ବସ ବସ ! ଦେଖିଛି ହେଁ ମେଁ ତୋ ପହଚାନ ଲିୟା । ଔର ବୋଲ୍‌ନେକୋ କୋଇ ଜରୁରତ ନେହିଁ ହେ ।

[ ଲାଳସାପୂର୍ଣ୍ଣ ଭଙ୍ଗୀରେ ଆଖିରେ ଆନନ୍ଦ ଓ ଆଗ୍ରହ ଫୁଟାଇ ଅଭିନନ୍ଦନ କଲେ ]

ଜୟନ୍ତ—ତା'ହେଲେ ଆଜି agreementଟା sign କରିବାରେ କିଛି objection ଅଛି କି ?

ସେଠଜୀ—ନେହିଁ, ନେହିଁ, ଅଭି ହାମ୍ ସାଇନ୍ କର୍‌ଦେଗା । କୋଇ ବାତ୍ ନେହିଁ ।

( ଆଗ୍ରହରେ cheque ଲେଖିବାକୁ ଲାଗିଲେ )

ଜୟନ୍ତ—କିନ୍ତୁ ଆପଣଙ୍କର Pleader ?

ସେଠଜୀ—ଛୋଡ଼ୋ, ଛୋଡ଼ୋ ଓ ବାତ୍ । ଓ ହୋଯାଏଗା ।

[ Agreement sign କଲେ ଲଗ୍ନାର ମନର ଭାବ ଅଶାନ୍ତ ଥିଲା ଓ ଜୟନ୍ତର ବିଜୟସୂଚକ ତୃପ୍ତିର ହସ ]

( ସେଠଜୀ ହାତ ମିଳେଇଲେ ଜୟନ୍ତ ସହ )

## ଚତୁର୍ଥ ଦୃଶ୍ୟ

[ ଅଦ୍ୱୈତ କ୍ୟାମେରାରେ ରତନାର ଫଟୋ ନବାକୁ ଚେଷ୍ଟା କରୁଥିଲେ ]

ଅଦ୍ୱୈତ—ବେଶି ନୁହେଁ, ଗୋଟେ ମିନଟ ।

ରତନା—କାହିଁ ବାବୁ, ଆଜ୍ଞା । ମୋର ଗୋଟେ କ'ଣ ଫଟୋ ନବ ?

ଅଦ୍ୱୈତ—ବୁଝିଲୁ, ରତନା, ଏଠିକି ଢେର ଲୋକ ଦୌଡ଼ୁଥିବେ ଲମ୍ବା ଦେବୀଙ୍କର ଫଟୋ ନବାକୁ । ହେଲେ, ତୋ ଫଟୋ ଉଠାବାକୁ ଆସୁଚି କିଏ ?

ରତନା—ମୁଁ ତ ସେୟା କହୁଚି, ଆପଣଙ୍କ ମୁଣ୍ଡରେ ଏ ପାଗଲାମି ଢୁକିଲା କାହିଁକି ?

ଅଦ୍ୱୈତ—ପାଗଲାମୀ ନୁହେଁ । ଆସନ୍ତା ମାସରେ ଲମ୍ବା ଦେବୀଙ୍କର ଯୋଉ ଜୀବନୀ ଛପା ହଉଚି, ସେଇ ସନ୍ଦାନ୍ତରେ ଏଗୁଡ଼ାକ ଦରକାର ।

ରତନା—ତା'ହେଲେ ଏଗୁଡ଼ାକ କ'ଣ ସବୁ କାଗଜରେ ଛପା ହବ, ବାବୁ ?

ଅଦ୍ୱୈତ—ହଁ, ଲମ୍ବା ଦେବୀଙ୍କ flatର ଫଟୋ, ତାଙ୍କ ପୋଷା କୁକୁରର ଫଟୋ, ତାଙ୍କ ଡ୍ରାଇଭର, ଚାକର, ପୂଝାରୀ, ସମସ୍ତଙ୍କର ଫଟୋ ଛପା ହବ ।

ରତନା—ଘରକଥା ନେଇ ଇମିତି ପଦାରେ ପକେଇବ କାହିଁକି, ବାବୁ ?

ଅଦ୍ୱୈତ—ଉପାୟ କ'ଣ ? ବାହାର ଲୋକଙ୍କର ଖାଲି ତମ ଦେଈଙ୍କ ଅଭିନୟ ଦେଖି ପେଟ ପୂରୁନ ରେ ! ସେମାନେ ଦେଈଙ୍କର ସବୁ ଖବର ଗୋଟି ଗୋଟି ଜାଣିବାକୁ ଚାହାନ୍ତି । ଦେଈ କ'ଣ ଖାଆନ୍ତି, କ'ଣ ପିଅନ୍ତି, କୋଉ କଡ଼ରେ ଶୁଅନ୍ତି, କି ସାବୁନ ଲଗାନ୍ତି, କି ସ୍ନୋ ମାଖନ୍ତି, କୋଉଫୁଲ ପିନ୍ଧନ୍ତି, କୋଉ ଗାଡ଼ି ଚଢ଼ନ୍ତି, ଆଉ ଶେଷରେ କୋଉ ଚାକର ନେଇ ଚଳନ୍ତି, ଏଇ ସବୁ ଖବର ଯୋଗେଇ ନ ପାରିଲେ ଆମ ଚାକିରି ଖଣ୍ଡିକ ଗଲା ।

ରତନା   କ'ଣ ହେଲା ? ସ୍ଥକର ସ୍ଥଲିଯିବ ?

ଅଦ୍ୱୈତ—ହଁ, ସମ୍ପାଦକଙ୍କର କଡ଼ା ତାଗିଦ୍, ଆଗାମୀ ସଂଖ୍ୟାରେ ଯେପରି ପାଠକ-
ମାନଙ୍କର ସବୁ ପ୍ରଶ୍ନର ଉତ୍ତର ଦିଆଯାଏ ।

ରତନା—ଇମିତି ଯଦି କଥା, ତା'ହେଲେ ଆସୁନାହାନ୍ତି, ସବୁ ଖବର ମୁଁ ଦଉଚି
ଦଉଚ ! ଆଉ ଫଟୋ ? ଆସନ୍ତୁ, କେତେ ଉଠେଇବେ !

ଅଦ୍ୱୈତ—ଆରେ କୋ ଫଟୋଗ୍ରାଫ ହଉ ।

ରତନା—ହଁ; ମୋର ହବ । ହେଲେ ଇମିତି ନୁହେ ।

ଅଦ୍ୱୈତ—ମାନେ ?

ରତନା—ମୁଁ ମୁଣ୍ଡ କୁଣ୍ଡାଏଁ, ଭଲ ଜାମାପଟା ପିନ୍ଧେ, ତା'ପରେ ଦେଈଙ୍କ ପାଖରେ
ଠିଆ ହେବ ; ତା'ପର ଆପଣ ଯାଇ ମୋ ଫଟ ଉଠେଇବେ ।

ଅଦ୍ୱୈତ—ଏଁ !!

ରତନା—ଆଉ କ'ଣ ଏମିତି ? ଲୋକେ ଦେଖିଲେ କ'ଣ କହିବେ ? ମୋ
ଦେଈଙ୍କର ମାନ ତଳେ ହିଆ ହେଇଯିବନି ? ସେକଥା ହେଇପାରିବନି ।
ଆସନ୍ତୁ, ଆସନ୍ତୁ, ଭିତରକୁ ଆସନ୍ତୁ ।

ଅଦ୍ୱୈତ—ହଉ ସ୍ଥଲ୍ ସ୍ଥଲ ! ଏଇ ଯେ ଲଗ୍ନା ଦେବୀ ? ନମସ୍କାର !

ଲଗ୍ନା   ( ପ୍ରବେଶକରି ) ନମସ୍କାର ! ଆପଣ କେଉଁଠୁ ?

ଅଦ୍ୱୈତ—ଯାଃ, ଦେଖନ୍ତୁ, ଆପଣ ସବୁ ଭୁଲିଯାଇଛନ୍ତି   ଆଜ ତେର ତାରିଖ ।
ମୋର appointment ଥିଲା ଯେ, ଆଗାମୀ ସଂଖ୍ୟା ପାଇଁ ଅନେକ
ଫଟୋ ଦରକାର । ତା'ଛଡ଼ା detailed life history ମଧ୍ୟ ।

ଲଗ୍ନା—I am so sorry,ମୁଁ ଭୁଲିଯାଇଛ । ଆପଣ ଭିତରକୁ ଆସନ୍ତୁ । ରତନା,
ବାବୁଙ୍କ ପାଇଁ ଗ୍ଲ, କଫି ଯାହା କିଛି ଦରକାର, ବ୍ୟବସ୍ଥା କର ।

ଅଦ୍ୱୈତ- ସେ ସବୁ କିଛି ଦରକାର ନାହିଁ, ଆଜ୍ଞା ! କାହିଁକି ମିଛଟାରେ
formality···?

ଲଗ୍ନା— ଠିକ୍ ଅଛି । ଆପଣ ଯଦି formalityକୁ ବାଦ୍ ଦବାକୁ ରାଜି ଅଛନ୍ତି, ତେବେ ମୁଁ କହୁଛି, ଆପଣଙ୍କୁ ଏଠି dinner ଖାଇ ଯିବାକୁ ପଡ଼ିବ । ଏଥର ହେଲା ?

ଅଦ୍ୱୈତ—ଏକାଥରକେ Capital punishment ! : !

ଲଗ୍ନା— କ'ଣ ରଚନା, କାନକୁ ଶୁଭୁନି ? ଯା, ଏଥର ଭଲକରି ସେବା କର । ନ ହେଲେ ତୋ ନାଁରେ କ' ଉପାଧି ବାହାରିଯିବ ।

ରଚନା—ହଁ, ଇମିତି କଥା ପଡ଼, ଆସ ବାବୁ, ଆସ ମୋ ସାଙ୍ଗରେ ।

( ଦୁହେଁ ପ୍ରସ୍ଥାନ କଲେ )

[ ବିପରୀତ ଦିଗରୁ ପ୍ରବେଶ କଲା ସ୍ମିତା ]

ସ୍ମିତା—ତୁମେ ମତେ ଚିହ୍ନିବ ନାହିଁ । ନାଁଟା କହିଲେ ବି ତୁମେ ମତେ ରଖିପାରିବ ନାହିଁ । ଧରନିଅ, ମୁଁ ତୁମର ଅସଂଖ୍ୟ ବିମୁଗ୍ଧ ଦର୍ଶକମାନଙ୍କ ମଧ୍ୟରୁ ଜଣେ । ଆସିଚି ତୁମକୁ ଶୁଭେଚ୍ଛା ଜଣେଇବାକୁ । ସତରେ ତୁମେ ଚମତ୍କାର ଅଭିନୟ କରୁଚ । ତୁମ ଭିତରେ ଅଛି ସେଇ ସମ୍ଭାବନା, ସେଇ ସ୍ୱାକ୍ଷର, ସେଇ ସ୍ୱୀକୃତି, ଯାହା ତୁମକୁ ଦିନେ ଅନେକ ଉପରକୁ ଉଠେଇନେଇପାରିବ ।

ଲଗ୍ନା—ନା, ନା, ପ୍ରକୃତରେ ଏତେଟା ପ୍ରଶଂସା ପାଇବାର ପାତ୍ରୀ ମୁଁ ନୁହେଁ । ଆପଣ କାହିଁକି ମିଛଟାରେ···?

ସ୍ମିତା—ମତେ କ'ଣ ତୁମେ ଅନ୍ୟମାନଙ୍କ ପରି ଭାବିଲ । ଯୋଉମାନେ ସତଟାକୁ ମିଛ କରନ୍ତି, କଥାଟା ଯିଏ ଯେତେ, ତା'ଠୁ ବଢ଼େଇ କରି କୁହନ୍ତି । ମୁଁ କିନ୍ତୁ ସେଇମାନଙ୍କ ମଧ୍ୟରୁ କେହି ନୁହେଁ । ମୁଁ ଆସିଚି ଖାଲି ସତ କଥା କେଇପଦ କହିଯିବି ବୋଲି ।

ଲଗ୍ନା—ଆପଣ ନୂଆ କ'ଣ କହିବେ ? ପ୍ରତିଦିନ ତ ଅନେକ ଲୋକ ଏଠିକି ଆସନ୍ତି; ଅନେକ କଥା କୁହନ୍ତି । ଅନେକ ପ୍ରଶଂସା, ଅନେକ ଉଚ୍ଛ୍ୱାସ,

ଅନେକ ଆଶ୍ୱାସନା, ସବୁ ମନେ ଶୁଣିବାକୁ ପଡ଼େ । କେହି ଫୁଲତୋଡ଼ା ନେଇ ଆସେ, କେହି ବା ଆସେ ହାତରେ ଦାମୀ ଉପହାର ନେଇ । ମୋର ଭବିଷ୍ୟତ ନେଇ ସେମାନେ କଳ୍ପନାର ଜାଲ ବୁଣନ୍ତି ।

ସୁମିତା—ମୁଁ ଠିକ୍ ସେଥି କହିବାକୁ ଆସିଛି, ଲଗ୍ନା, ଯଦି ବା ତୁମେ ଶୁଣ, ତୁମେ ଦେଖ, ସେ ସବୁ ସତ ନୁହେଁ; ସେ କଥା ସ୍ୱପ୍ନ, ହୁଏତ ନିହାତି ମିଛ ।

ଲଗ୍ନା—ତୁମେ କ'ଣ କହିବାକୁ ଚାହୁଁଛ ?

ସୁମିତା—ଦେଖୁଛ, ତୁମେ ଖୁବ ବୋକା । ଛବିରେ ଯୋଉମାନେ ଅଭିନୟ କରନ୍ତି, ସେମାନେ କିନ୍ତୁ ଏତେଟା ବୋକା ହେବା ଆଦୌ ଉଚିତ ନୁହେଁ । ସହଜ, ସରଳ ଅଭିନୟ କରି ତୁମେ ଲୋକଙ୍କୁ ମୁଗ୍ଧ କରିପାର । କିନ୍ତୁ ସତରେ ଯଦି ଜୀବନରେ ତୁମେ ସରଳ ହବାକୁ ଚେଷ୍ଟା କର, ତା'ହେଲେ ହାରିଯିବ । ଲୋକେ ତୁମକୁ exploit କରିବେ । ହଠାତ୍ ତୁମେ ଦିନେ ଦେଖିବ, ତୁମ ଅଜାଣତରେ ତୁମେ ନିଃସ୍ୱ ହୋଇଯାଇଛ, କାଙ୍ଗାଳ ହୋଇଯାଇଛ, ସର୍ବହରା ହୋଇଯାଇଛ ।

ଲଗ୍ନା—ଏଇ କ'ଣ ତା'ହେଲେ ତୁମର ଅଭିନନ୍ଦନ ?

ସୁମିତା—ମୋ କଥାଗୁଡ଼ା ତୁମକୁ ବୋଧହୁଏ ଭଲ ଲାଗୁନି ?

ଲଗ୍ନା—ନା, ବରଂ ଖୁସୁଛି, କେହି ତ ମତେ ଇମିତିଭାବେ ଶୁଭେଚ୍ଛା ଜଣେଇ ନାହାନ୍ତି, ଇମିତି ଭାବରେ ଅଭିନନ୍ଦନ ଜଣେଇବାକୁ ଆସିନାହାନ୍ତି !

ସୁମିତା—ହଁ, ମିଠା ମିଠା ମିଛ କଥା ଓ କଳ୍ପନାର ଜାଲ ବୁଣି ମୁଁ ତ ତୁମକୁ ଖୁସି କରିବାକୁ ଆସିନି ! ଯୋଉ କଥା ତୁମକୁ କେହି କହୁନାହାନ୍ତି, କି କହିବେ ନାହିଁ, ସେଇକଥା କହିବାକୁ ମୁଁ ଆସିଛି । ତୁମେ ହୁଏତ ଜାଣିନ, ତୁମର କେତେ ବଡ଼ ଶତ୍ରୁ ! କେତେ ବିପଦ !

ଲଗ୍ନା—ବିପଦ ? ଶତ୍ରୁ ?

ସୁମିତା—ହଁ, ତୁମେ ଖାଲି ଜନ୍ମଗୃହ ଦେଖିଚ; ଅମାବାସ୍ୟାର ଅନ୍ଧକାର ଦେଖିନ, ଝଡ଼ଝଞ୍ଜାର ରୁଦ୍ର ତାଣ୍ଡବ ଦେଖିନ । ନା, ତୁମେ କିଛି ଦେଖିନ । ସେସବୁ ଦେଖିବା ଆଗରୁ ନିଜକୁ ପ୍ରସ୍ତୁତ କରିନଅ !

ଲଗ୍ନା—କିନ୍ତୁଯାଅ, ତୁମେ କିଏ ?

ସୁମିତା—ସେ ସମସ୍ତ ଆସୁ, କହିବ, ନିଷ୍ଟସ୍ତ କହିବ ।

( କହି କହି ହଠାତ୍ ଫେରିଗଲେ )



## ପ୍ରଥମ ଦୃଶ୍ୟ

[ ଲଗ୍ନାର drawing room. ଜୟନ୍ତ ବସି screen play ତିଆରି କରୁଥିଲେ । ରାଜୀବ, ଚଳଚ୍ଚିତ୍ରର କାହାଣୀ ଲେଖକ, ଭିତରକୁ ପଶିଆସି— ]

ରାଜୀବ—ଭିତରକୁ ଆସିପାରେ କି ?

ଜୟନ୍ତ—ଭିତରକୁ ଆସିସାରିବା ପରେ ଏ କଥା କହିବାର ମାନେ ହୁଏ ନାହିଁ । ଆସନ୍ତୁ !

ରାଜୀବ—ନମସ୍କାର !

ଜୟନ୍ତ—ନମସ୍କାର ! ଆରେ, ରାଜୀବବାବୁ ! ଆସନ୍ତୁ, ଆସନ୍ତୁ ! କି'ଣ, film ଟା ଦେଖିଲେ ?

ରାଜୀବ—ଆଜ୍ଞା ! ହେଲେ ନିଜ ହାତରୁ ପଇସା ଖର୍ଚ୍ଚ କରି ଟିକେଟ୍ କାଟି ଦେଖିବାକୁ ପଡ଼ିଲା ।

ଜୟନ୍ତ—କ'ଣ କହୁଚ ? ଆପଣ ହେଲେ ସେ filmର story wrirer; ଅଥଚ ଟିକେଟ କରି ଆପଣଙ୍କୁ ସେ film ଦେଖିବାକୁ ପଡ଼ିଲା ? କାହିଁକି, ଆପଣ କ'ଣ invitation card ପାଇନାହାନ୍ତି ?

ରାଜୀବ—ହଁ, ପାଇଥିଲି, ଖାଲି ଲଫାପାଟା, ସେଥିରେ କାର୍ଡ଼ ନ ଥିଲା ।

ଜୟନ୍ତ—ମନେହେଉଚି, ଆପଣଙ୍କୁ କେହି April fool କରି ଦେଇଚି । କ'ଣ କରିବ କୁହନ୍ତୁ, ବ୍ୟକ୍ତିଗତଭାବେ ଦେଇଲେ ହଜିଲା । Postରେ ପଠେଇଲେ ହଜିଲା । ପ୍ରତିଥର ଏଇ problem ! ନା, ଆଉ ପାରିହବନି । କ'ଣ କରାଯିବ, କୁହନ୍ତୁ ? ଏକା ଲୋକ, ଯେତେଟା ପାରିଚି, କରିଚି । ହଉ, ଟିକେଟ୍ ଦେଇ ତ ଦେଖିଲେ ? ଗରିବ producer ଏବେ ଆପଣଙ୍କ ନିକଟରୁ କିଛି ପଇସା ହେଲେ ପାଇଲା । କୁହନ୍ତୁ, ଛବିଟା କେମିତି ଲାଗିଲା ?

ରାଜୀବ—Rubbish !

ଜୟନ୍ତ—କ'ଣ କହୁଚ ? ଓ ! ଏ ପର୍ଯ୍ୟନ୍ତ ରାଗଟା ଆପଣଙ୍କର ସତରେ କମିନାହିଁ, ଦେଖୁଚି ।

ରାଜୀବ—ରାଗିବ ନାହିଁ ? ମୋ ବହି novel ଥିଲା ବରଂ ଭଲ ଥିଲା । କିନ୍ତୁ ଛବିଟା ଦେଖି ମନେହେଲା, ଆପଣ ମୋ କାହାଣୀର ଶ୍ରାଦ୍ଧ କରିଚନ୍ତି ।

ଜୟନ୍ତ—ଶ୍ରାଦ୍ଧ ?

ରାଜୀବ—ହଁ, ଛବିଟି ଦେଖି ମନେ ହେଲା, ସେଟା ମୋ ଲେଖିବା କାହାଣୀ ନୁହେଁ ।

ଜୟନ୍ତ—ହଁ ସେମିତି ହେଇଥାଏ, ରାଜୀବବାବୁ ! Novel-ଗୁଡ଼ାକ ନାଟକ ହେଲେ ଫିଫ୍‌ଟି ପରସେଣ୍ଟ୍ ବଦଳି ଯାଏ । ଆଉ ନାଟକଟା ସିନେମା ହବାକୁ ଯାଏ ସେଣ୍ଟ୍‌ପରସେଣ୍ଟ ।

ରାଜୀବ—ତା'ହେଲେ ମୋ ନାଟା ଶହେ ପରସେଣ୍ଟ ଉଡ଼େଇ ଦେଇଥିଲେ କିଛି ଅଚଳ ହେଇ ନ ଥାନ୍ତା !

ଜୟନ୍ତ—ତା କମିଛ ହବ, ଅଜ୍ଞ ? ବରଂ ଏଇଟା ଆପଣଙ୍କ ବହି ବୋଲି ନୂଆ ନୂଆ idea ଆଣି filmଟାକୁ ଏକାବେଳକେ high light କରିଦେଇଛ ।

ସୁଶାନ୍ତ—ହଁ, ସେ ନୂଆ idea ଗୁଡ଼ାକ ମୁଁ ଜାଣିଛି । କଲିକତାରୁ screen play, ବମ୍ବେରୁ music, ମାଡ୍ରାସରୁ ନାଚ, ଦିଲ୍ଲୀରୁ hero, ଗୁଜରାଟରୁ villian, ଭୁବନେଶ୍ୱରରୁ heroine ଓଃ, ଚମତ୍କାର ବ୍ୟବସ୍ଥା !

ଜୟନ୍ତ—ଏସବୁ ନେଇ ଆପଣଙ୍କ story valueଟା ବଢ଼ିଛି ନା କମିଛି, ଆପଣ କହିଲେ ?

ସୁଶାନ୍ତ—ବହିଟାର ନା ଥିଲା, "ଅଶ୍ରୁପୂରବୀ", ମାନେ Tragedy ଅଥଚ ଆପଣଙ୍କ filmର ଶେଷ ଦୃଶ୍ୟରେ ଦେଖିଲି, ନାୟକ ନାୟିକା ବିବାହ ପରେ honey moon କରିବାକୁ ଦାର୍ଜିଲିଂ ଯାଉଛନ୍ତି । ଏଥିକି ବିଚାର କରି ଆପଣ ମତେ କୁହନ୍ତୁ, ମୋ storyର value ବଢ଼ିଛି ନା କମିଛି ?

ଜୟନ୍ତ—ବାହାହେଲା ପରେ honey moonରେ ନ ପଠେଇ ଯଦି ଆପଣଙ୍କର original novel ଭଳିଆ ସେଇଠୁ ଦୁ'ଜଣଙ୍କୁ ଅଲଗା କରିଦେଇ ଥାନ୍ତୁ, ତା'ହେଲେ ଦର୍ଶକମାନେ ମତେ ସିଧା ଡାକ୍ତରଖାନାର surgical ଓ୍ୟାର୍ଡ଼କୁ ପଠେଇଦେଇଥାନ୍ତେ ।

ସୁଶାନ୍ତ—ହଉ, ମାନିଲି । ଆପଣ ଦର୍ଶକମାନଙ୍କ ପାଇଁ ସେମାନଙ୍କୁ ବାହା କରେଇ ଦେଲେ; ଆଉ honey moonକୁ ପଠେଇ ଦେଲେ, ହେଲେ ନାୟିକାର ଚରିତ୍ରକୁ କ'ଣ କରିଛନ୍ତି, କହିଲେ ?

ଜୟନ୍ତ—ନାୟିକା କଥା ପଚାରୁଛନ୍ତି ? ସେ ଚରିତ୍ର ଦେଖି ତ ଲୋକେ ପାଗଳ ।

ସୁଶାନ୍ତ—ପାଗଳ ତ ହବା କଥା । ଗରିବ ଶିକ୍ଷକର ଝିଅ । ତାକୁ ଯଦି ହଠାତ୍ ଚପା ସାଲଓ୍ୟାର ପଞ୍ଜାବି ପିନ୍ଧେଇ, ଫିନଫିନ ଦୁପଟା ହଲେଇ ନନ୍ଦନକାନନରେ

ଗୀତ ଗାଇ ବୁଲୁଥିବାର ଦର୍ଶକମାନେ ଦେଖନ୍ତି, ତା'ହେଲେ ପାଗଳ ହେଇଯିବେନ ?

ଜୟନ୍ତ—ଆହା, ଆପଣ ବୁଝିପାରିଲେନ ? ସେଇଟା ହେଲା ଆମର dream scequence ।

ସୁଜୀବ—ହଉ, ଆପଣ ଆପଣଙ୍କର dream ନେଇ ବୁଲନ୍ତୁ । ମତେ contract ଅନୁଯାୟୀ payment ଦେଇ ଦିଅନ୍ତୁ ।

ଜୟନ୍ତ—Payment ? ଓ, ଟଙ୍କା କଥା କହୁଚନ୍ତି ? ଆମ ଭିତରେ ଟଙ୍କା ପଇସାଟା କ'ଣ ବଡ଼ କଥା ?

ସୁଜୀବ - ନା, ମୁଁ ଜାଣିଚ, ଆଦୌ ବଡ଼ ନୁହେଁ; କହ୍ଵାର ଗ୍ରେଟ କଥା । ହେଲେ, ମୁଁ ସେ ଅଡ଼୍ୟାଟା ଭୁଟେଇଦବାକୁ ଚାହେଁ ।

ଜୟନ୍ତ—ଏତେ ସହଜରେ ମୁଁ ଆପଣଙ୍କ ଅଡ଼୍ୟାଟା ଛୁଟେଇ ଦଉନାହିଁ । ଆପଣଙ୍କ storyଟା ନେଇ ଏଇ ଓଡ଼ିଶା ଭିତରେ ଚୁପ୍ ହେଇ ବସିନାହିଁ । ଏଇ ଆଜି Bombayର ଜଣେ producer ଆପଣଙ୍କ story ପାଇଁ trunk call କରିଚନ୍ତି । ସେ କହୁଚନ୍ତି ଦଶ ହଜାର । କିନ୍ତୁ ମୁଁ କହୁଚି, ନା, storyର potentiality ଯାହା, କୋଡ଼ିଏ ହଜାର ନ ହେଲେ ହବ ନାହିଁ ।

ସୁଜୀବ—କ'ଣ କହୁଚନ୍ତି ଆଜ୍ଞା ? ଏଁ, କୋ···କୋ···କୋଡ଼ିଏ ହଜାର !

( ପାଗଳ ପରି ଚିତ୍କାର କରିବା )

ଜୟନ୍ତ—ସୁଜୀବବାବୁ ! ଆରେ, କ'ଣ ହେଲା ? କ'ଣ, ଆପଣଙ୍କର ଦେହ ଭଲ ଲାଗୁନାହିଁ ? ମୁଁ ଆପଣଙ୍କୁ ନେଇ ଆପଣଙ୍କ ଘରେ ଛାଡ଼ି ଦେଇ ଆସୁଚି । କାଲି ସକାଳୁ ମୁଣ୍ଡ ଥଣ୍ଡା କରି ଆସି ମତେ ଆପଣଙ୍କ term ଟା ଜଣେଇବେ । ମୁଁ trunk call କରି କଥାଟା finalise କରିଦେବି । ରତନା, ଯା, ସୁଜୀବବାବୁଙ୍କୁ ନେଇ ରେକ୍ସାରେ ବସେଇଦେଇ ଆସିବୁ ! ଯା···

[ ଆସି ବସିଚନ୍ତି । ପୁଣି 'କୋଡ଼ିଏ ହଜାର ଟଙ୍କା' କହି ହସିଚନ୍ତି ଓ ପରେ ରତନା ହାତ ଧରି ନେଇଯାଇଚ ବାହାରକୁ ]

( ପରେ ପରେ ଆସିଚ ଗାଉଁଲି ବେଶରେ ଅନାମ ପରିଡ଼ା )

ଅନାମ—( ପ୍ରବେଶ କରି ) ଆଜ୍ଞା, ମୁଁ ···

ଜୟନ୍ତ—କିଏ ତମେ ? କାହାକୁ କହି ଏଠା ଭିତରକୁ ଆସିଲ ? କାହିଁକି ଆସିଲ ? Get out ! I say, get out ! କାହାକୁ କିଛି ନ କହି ତୁମେ tresspass କରିଚ । ମୁଁ ତୁମକୁ ପୋଲିସରେ ଦେବି ! I will hand over you to the police !

ଅନାମ—ଆଜ୍ଞା, ମୋ ନାଁ । ଅନାମ ପରିଡ଼ା । ମୁଁ ଗାଁରୁ ଅସିଚି । ସହରରେ ବାଟ ଘାଟ ମତେ ଜଣା ନାହିଁ । ଭୁଲରେ ପଶିଆସିଚି, ଆଜ୍ଞା ।

ଜୟନ୍ତ—ଭୁଲରେ ଆଉ କୁଆଡ଼େ ଯାଇପାରିଲନି, ସିଧାସଳଖ ଏଇଠିକି ମରିବାକୁ ପଶିଆସିଲ ?

ଅନାମ—ଆଜ୍ଞା, ରତନାକୁ ତ ଖୋଜି ଖୋଜି ପଶିଆସିଚି ! ଲୋକେ କହିଲେ, ସିଏ ଏଇଠି ରହୁଚ, ଆଜ୍ଞା ! ଭୁଲ ହୋଇଯାଇଚ, ଆଜ୍ଞା ! ମୁଁ ପଳେଇଯାଉଚି, ଆଜ୍ଞା ! ( ଯିବାକୁ ଉଦ୍ୟତ )

ଜୟନ୍ତ—ଏ, ଶୁଣ !

ଅନାମ—ଆଜ୍ଞା, ମତେ ଡାକିଲେ ?

ଜୟନ୍ତ—ତମ ନାଁ'ଟା କ'ଣ, କହିଲ ?

ଅନାମ—ଆଜ୍ଞା, ଅନାମ ପରିଡ଼ା ।

ଜୟନ୍ତ ଅନାମ ପରିଡ଼ା ? ଘର ?

ଅନାମ –ନୂଆ ଗାଁ ।

ଜୟନ୍ତ—ତମେ ନୂଆ ଗାଁର ଅନାମ ପରଡ଼ା ? ( ବିରକ୍ତ କଣ୍ଠରେ ) ତମେ ଏଠିକି କାହିଁକି ଆସିଚ ?

ଅନାମ—ଆଜ୍ଞା, ଚାକିରି କରିବାକୁ । ( ଜୟନ୍ତ ଆନନ୍ଦରେ ଅନାମକୁ କୁଣ୍ଢେଇ ପକେଇଲେ ) ମତେ ଛାଡ଼ିଦିଅନ୍ତୁ ଆଜ୍ଞା, ମୁଁ ଚାଲିଯିବି । ମୋର ଭୁଲ ହୋଇଚ । ମତେ ଦୟା କରି ପୋଲିସ୍‌ରେ ଦିଅନ୍ତୁ ନା ।

ଜୟନ୍ତ—ତମେ ମତେ ଚହ୍ନି ପାରୁନ, ଅନାମ ?

ଅନାମ—ଆଜ୍ଞା !

ଜୟନ୍ତ—( ହସିଉଠି ) ମୁଁ ଦେଖୁଚ, ତମର କିଛି ବଦଳିନ । ସେଇ ମୂର୍ଖ, ସେଇ କଥା, ସେଇ ଧୋତି, ସବୁ ଠିକ୍ ସେମିତି ଅଛି । ତମେ ମୋଟେ ବଦଳିନ । ନା, ତମେ ଆଦୌ ବଦଳିନା !

ଅନାମ—ଆଜ୍ଞା, ଆପଣ କ'ଣ କହୁଚନ୍ତି ?

ଜୟନ୍ତ—ଲଗ୍ନା, ଟିକେ ଇଆଡ଼େ ଆସିବ !

ଲଗ୍ନା—( ଭିତରୁ ) କ'ଣ ତମର file କାମ ସରିଲା ?

ଜୟନ୍ତ—ନା, ଆପାତତଃ ସବୁ କାମ ବନ୍ଦ ରଖିବାକୁ ପଡ଼ିଲା, ଜଣେ, ପରିଚିତ ଆଗନ୍ତୁକଙ୍କ ପାଇଁ । ଆସ, ଦେଖିବ ।

ଲଗ୍ନା—ଆଗନ୍ତୁକ ? କିଏ ସେ ?

ଜୟନ୍ତ—ଦେଖୁନ, ଚଷ୍ଟାଆଖାନାର ଗୋଟେ ଜନ୍ତୁ…

ଲଗ୍ନା—ଭଦ୍ରଲୋକଙ୍କୁ ଡାକଆଣି ଇମିତି ଅପମାନ ଦବାର ମାନେ କିଛି ବୁଝେନା ।

ଜୟନ୍ତ—ଭଦ୍ରଲୋକ ? ଦେଖୁନା, ରାତିର ଭଲ କମିତି ପଶିଆସିଥିଲେ ; ଆଉ ପାଟି ଶୁଣି ଚୋରର ଭଳି ଘରୁ ବାହାରିଯାଉଥିଲେ । ଜୋର କରି ଅଟକେଇ ରଖିଚ ।

ଲଗ୍ନା—ତମେ କଥା କହିବା ବନ୍ଦ କରି ତାଙ୍କୁ କିଛି କହିବାକୁ ଦିଅ ।

ଜୟନ୍ତ—ତା' କାନ କାଟିଦେଲେ ବି ସେ କଥା କହିବନି । ନୂଆ ଗାଁ location ସୁଟିଂ ବେଳେ ତା ସାଙ୍ଗରେ ଚିହ୍ନା । ଯାହା help କରିଛ ମତେ କଣ କହିବ ? ତା'କଥା ମୋର ଟିକେ ମନପଡ଼େ । ହେଲେ, ସେ ଅନାମ ପରଭଳି ଆଜ ଏମିତି ଏଇଠି ଆକସ୍ମିକ ଭାବରେ ପାଇବ ବୋଲି ମୁଁ ମୋଟେ ଆଶା କରିନଥିଲି ।

ଲଗ୍ନା—ବାଃ, ଚମତ୍କାର ! ପୂର୍ଣ୍ଣପୂରି ନାଟକୀୟ !

ଜୟନ୍ତ—ହଁ, ଏଇଟାକୁ ଆଗାମୀ ଛବିର plat କଲେ ଭଲ ହୁଅନ୍ତା ନା ? ହେଲେ ତା ପାଇଁ ଇମିତି ବୋକା heroଟାଏ ବି ଯୋଗାଡ଼ କରିବାକୁ ତ ପଡ଼ିବ !

ଲଗ୍ନା—ଦେଖନ୍ତୁ, ଅନାମବାବୁ ! ଆପଣଙ୍କ ମାରବଡାର ସୁଯୋଗ ନେଇ ଜୟନ୍ତବାବୁ ଆପଣଙ୍କୁ ଚଢ଼ଆଖାନାର ଜନ୍ତୁ ବୋଲି introduce କଲେ । ଏବେ ବୋକା କହିଲେଣି । ଆଉ ଏହା ପରେ କ'ଣ କହିବେ, ଜାଣନ୍ତି ? ବୋବା, ମାନେ dumb ! ଏଥର କିଛୁ କୁହନ୍ତୁ, ନା, please !

ଅନାମ—ମତେ ଗୁଡ଼ାଇଦିଅନ୍ତୁ, ମୁଁ ଗୁଳିଯିବି । ( ଅନାମ ପିଲାଙ୍କ ପରି କାନ୍ଦ କାନ୍ଦ କହିଲା । ତା କଥା ଯେତକ ଜୋରରେ ଶୁଭୁଥାଏ, ଜୟନ୍ତ ଓ ଲଗ୍ନା ଠିକ୍ ସେତକ ଜୋରରେ ହସୁଥାନ୍ତି । )



# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଜୟନ୍ତଙ୍କ drawing room. ସଞ୍ଜୀବ ଓ ଜୟନ୍ତ ଦୁହେଁ ବସି କଥାବାର୍ତ୍ତା ହେଉଥିଲେ ]

ଜୟନ୍ତ—ଆପଣ ଛବିର producer ହେବାକୁ ଯାଉଚନ୍ତି, ମୁଁ ଆପଣଙ୍କୁ congratulate କରୁଚି । କିନ୍ତୁ ମୋ ମୁହଁରୁ ଆପଣଙ୍କୁ କେଇଟା ଅପ୍ରିୟ ସତ୍ୟ ଶୁଣିବାକୁ ପଡ଼ିବ । ମୋର request, ପୂରା ଛବିର total amountଟା ଆପଣ ହାତରେ ନ ଧରି କାମରେ ଆଗେଇବା ଉଚିତ ନୁହେଁ ।

ସଞ୍ଜୀବ—ସେ ବିଷୟ ନେଇ ଆପଣ ନିଶ୍ଚିନ୍ତ ରହିପାରନ୍ତି ।

ଜୟନ୍ତ—ମୁଁ ଜାଣେ, ଆପଣ ଅଭିଜ୍ଞ ଲୋକ, ପକ୍କା କାମ କରିଥିବେ ।

ସଞ୍ଜୀବ—କିନ୍ତୁ ଅସଲ କାମଟି ପକ୍କା କରିବାର ଦାୟିତ୍ୱ ଯେ ଆପଣଙ୍କ ଉପରେ ରହିଚି ।

ଜୟନ୍ତ—ଅସଲ କାମ ?

ସଞ୍ଜୀବ—ହଁ, heroine ପାଇଁ ଲକ୍ଷ୍ମୀକୁ ରାଜି କରେଇବାର ଦାୟିତ୍ୱ ଆପଣଙ୍କର ।

ଜୟନ୍ତ—ହଁ, ସେ ଦାୟିତ୍ୱ ମୋର । ମୁଁ ବି ଆଜି busy ଅଛି । ଟିକରପଡ଼ାରେ outdoor shooting. ମତେ ପ୍ରସ୍ତୁତ ହେବାକୁ ପଡ଼ିବ । ଏକା ଲୋକ । ଯୋଉ ଜଞ୍ଜାଳ, ଆଉ କ'ଣ କହିବ ?

ସଙ୍ଗୀବ—ହଉ, ଆପଣଙ୍କ କଣ୍ଟ୍ରାକ ଶେଷ କରି ମୋ ପାଇଁ ଟିକାଏ ସମୟ ଦେବେ । ମୁଁ ଆସୁଚ ।

( ସଙ୍ଗୀବ ଚାଲିଗଲେ । ଜୟନ୍ତ ଫୋନ୍ ପାଖକୁ ଯାଇ ରିସିଭର ଉଠାଇଲେ )

ଜୟନ୍ତ—ହ୍ୟାଲୋ, 334 ! କିଏ ? ସୁରବାବୁ ? କ'ଣ ଦ'ଟା କଲ୍ ପଠେଇଚ ? କ୍ୟାମେରାମ୍ୟାନ୍‌କୁ କୁହ, ଆଠ ଘଣ୍ଟାରେ ସେମାନେ ଟିକରପଡ଼ା ଚାଲିଯାନ୍ତୁ । ଯଉ ଘଣ୍ଟାରେ artistମାନେ ଯିବେ । Make up manକୁ କୁହ, କାମ ଶୀଘ୍ର ଶେଷକରୁ । ଆଉ ଶୁଣ, breakfast, lunch ସବୁ ସେଇଠି ବ୍ୟବସ୍ଥା ହେଇଚ ।

( ଫୋନ୍ ରଖିବା ପରେ ପ୍ରବେଶ କରଚ ଶୁଭେନ୍ଦୁ )

ଶୁଭେନ୍ଦୁ—Good morning, ଜୟନ୍ତବାବୁ !

ଜୟନ୍ତ—ଆରେ, ଶୁଭେନ୍ଦୁବାବୁ ଯେ ! ଆସନ୍ତୁ, ବସନ୍ତୁ । ଆଉ, ଆପଙ୍କେର ଗାଡ଼ିଟା ?

ଶୁଭେନ୍ଦୁ—ମୋ ଗାଡ଼ି ନୁହେଁ ; କୁହନ୍ତୁ, ଆପଣଙ୍କ ଗାଡ଼ି ।

ଜୟନ୍ତ—( ଫାଇଲ୍ ଖୋଲଉ ଖୋଲଉ ) ମାନେ ?

ଶୁଭେନ୍ଦୁ—Shooting ସରିବାଯାଏ ଗାଡ଼ିଟା ଆପଣଙ୍କର ।

ଜୟନ୍ତ—ଶୁଣିଲି, କୁଆଡ଼େ ଏଇ ଗାଡ଼ି ବିଷୟ ନେଇ ଆପଣଙ୍କର ବାପାଙ୍କ ସହିତ ମନାନ୍ତର ହେଇଚ ?

ଶୁଭେନ୍ଦୁ—ହଁ ହେଇଚ । ତେବେ ଆପଣ ସେଥିରୁ କ'ଣ ପାଇବେ ? ମୁଁ ତ କବାବ ଦେଇଚ, shooting ସରିବାଯାଏ ଗାଡ଼ିଟା .ଆପଣଙ୍କ custodyରେ ରହିବ ।

ଜୟନ୍ତ—ଆପଣଙ୍କ ଉପରେ ସେ ବିଶ୍ୱାସ ମୋର ଅଛି । ତେବେ କଥା କ'ଣ କି ମିଛଟାରେ ଏଇ ସାମାନ୍ୟ କଥା ପାଇଁ ଆପଣଙ୍କ ଘରେ ଇମିତ ପରିସ୍ଥିତି ହବାଟା...

ଶୁଭେନ୍ଦୁ—ପଞ୍ଚୁଛି ? Dam it ! ତାପାଙ୍କୁ manage କରିବାର ଦାୟିତ୍ୱ ମୋର । ଆପଣ ଶୀଘ୍ର ବ ହାରନ୍ତୁ ତ !

ଜୟନ୍ତ —ଭଲ କଥା । ମୁଁ ଜିପ୍‌ରେ ଯାଉଛି । ଆପଣ ଆଗେ ଅନ୍ୟମାନଙ୍କୁ ନେଇ ଝିକରପଡ଼ା ବଙ୍ଗଲାକୁ ଚାଲିଯାନ୍ତୁ ।

ଶୁଭେନ୍ଦୁ—ବେଶ୍, ଠିକ୍ ଅଛୁ । ତା'ହେଲେ ଲମ୍ବା ଦେବୀ···ମୋ ଗାଡ଼ିରେ ବାହାରିପଡ଼ନ୍ତୁ ।

ଜୟନ୍ତ—ସୁନ୍ଦରିଆରଗଡ଼ ଡାକବଙ୍ଗଳାରେ ଅଛନ୍ତି । ସବୁ ladyartistଙ୍କୁ ଆପଣ ଗାଡ଼ିରେ ନେଇ ଚାଲିଯାନ୍ତୁ ।

ଶୁଭେନ୍ଦୁ— ହଠ୍ ହଠ୍ ) Thaf's nice ! ତା'ହେଲେ ମୁଁ ଚାଲିଲି ?

ଜୟନ୍ତ—ଆପଣଙ୍କ driverକୁ କହିବେ, ସେ breakfast ସେଇ bangalowରେ ଖାଇ ଚାଲିଯିବ ।

ଶୁଭେନ୍ଦୁ—ଆରେ, ନା ନା, driver ହାତରେ ମୁଁ lady artistଙ୍କୁ ଛାଡ଼ିଦେବ ବୋଲି ଭାବଚନ୍ତି ? ଏତେଟା irresponsible ମୁଁ ହୋଇପାରେ ନା । I shall drive myself.

ଜୟନ୍ତ—କିନ୍ତୁ ଆପଣ କାହିଁକ ମିଛଟାରେ ଆମ ପାଇଁ ହଇରାଣ ହେବେ ?

ଶୁଭେନ୍ଦୁ—No, no, it's my pleasure. ଆପଣ କଷ୍ଟସ୍ୱ ଏଥିରେ mind କରିବାର କିଛୁ ନାହିଁ ।

ଜୟନ୍ତ—ଧନ୍ୟବାଦ !

ଶୁଭେନ୍ଦୁ—ତା'ହେଲେ ମୁଁ ଆସୁଚି । ସେଇଠି ଦେଖା ହବ । ( ପ୍ରସ୍ଥାନ )

( Phone ring ହେଲା । ଜୟନ୍ତ ରସିଭର୍ ଉଠାଇଲେ )

ଜୟନ୍ତ—କିଏ, ଅଲେଖବାବୁ ? କ'ଣ ଖବର ? Artist ମାନଙ୍କର make up ସରିଲା ? କ'ଣ କହିଲେ ? ଖାଲି ଲମ୍ବା ଦେବୀଙ୍କର ବାକି ? ହଉ, ଶୀଘ୍ର ଶୀଘ୍ର ଶେଷ କରିଦିଅ । ଶୁଭେନ୍ଦୁବାବୁ ଗାଡ଼ି ନେଇ ବଙ୍ଗଳାକୁ ଗଲେ ।

ସେଇ ଗାଡ଼ିରେ ଯେମିତ ସବୁ lady artist ଗୁଲିଯାଆନ୍ତି । ହଁ, ହଁ, ମୁଁ ଯାଇ ଠିକ୍ ସମୟରେ ପହଞ୍ଚିବ ।

( ଶରୀରର ରଖିଥିଲେ; ତାହାକୁ ପଶିଆସିଚନ୍ତି ସେଠଜୀ )

ସେଠଜୀ—ଆରେ, ଜୟନ୍ତବାବୁ ! ବାତ୍ କ୍ୟା ? ସୁବହ ସୁବହ ମୁଝେ କ୍ୟୁଁ ବୁଲାଇଲ ?

ଜୟନ୍ତ—କାହିଁକି ଡକେଇଲ ? ବାଧ୍ୟ ହେଇ । ଆପଣଙ୍କର business ଆପଣ ଜାଣେ ବୁଝନ୍ତୁ ।

ସେଠଜୀ—ସମ୍ଭାଲେ ମୁଶିବତ୍ ! ମେରା business ! ! ଆରେ ଭାଇ, business ତୋ ଆପ୍‌କା ହୈ । ଅପ୍‌ନା ମୈ ତୋ ସିର୍ଫ cash box ହୁଁ ।

ଜୟନ୍ତ—ଇମିତ କହି ଆପଣ ସବୁ ବୋଝ ମୋ ଉପରେ ଲଦି ଦେଲେ ଚଳିବ ନାହିଁ ।

ସେଠଜୀ—ସମ୍ଭାଲେ ମୁଶିବତ୍ ! ! ! ମେରା କ୍ୟା କସୁର୍ ? ତୁମେ ତୋ ହର୍ ରୋଜ୍ shooting ପର ଯାନେକୋ ବୋଲ୍ତା ହୁଁ । ଲେକିନ୍ ବଡ଼ା ଡାକ୍ତରନେ ମେରା ଜାନେକି ବରବାଦ କର୍ ଚୁକା ହୈ । ଇସଲିଏ ହାମେ କହୁଥିଲି, ବଡ଼ା ଡାକ୍ତରକା ପାଶ୍ ଯିବ ନାହିଁ । ଆପଣ ହାମକୁ ଜୋର୍ କରି ନେଇଗଲ । ଅବ୍ ସମ୍ଭାଲେ ମୁଶିବତ୍ ! Blood pressure ! ଯାନା ଆନା ବନ୍ଦ୍ । ଖାନା ପିନା control ! ଫିର୍ ନମକ୍ ଛୋଡ଼୍‌ନେ ପଡ଼େଗା । କ୍ୟା କରୁଁ ?

ଜୟନ୍ତ—ହଁ, ଡାକ୍ତର ଯାହା କହୁଚନ୍ତି, word by word ମାନି ଚଳିବାକୁ ପଡ଼ିବ । ନ ହେଲେ କ୍ଷତି ଆପଣଙ୍କର ।

ସେଠଜୀ—କ୍ୟା ନୁକ୍‌ସାନ୍ ଆରେ, ଔର କ୍ୟା ଜ୍ୟାଦା ନୁକ୍‌ସାନ ହୋଗା ? ଯୋ ହୋନାଥା ହୋଚୁକା ହୈ । ହମାରା ବତଶ୍ ରୁପେୟା ନିକଲ ଗୟା ବଡ଼ା ଡାକ୍ତରକା fees । ସମ୍ଭାଲେ ମୁଶିବତ୍ ! ଔର ଫିର ଭି ନମକ୍ ଛୋଡ଼୍‌ନେ ପଡ଼େଗା ।

ଜୟନ୍ତ—Don't worry, ସେଠଜୀ ! ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣଙ୍କର କାମସବୁ ମୁଁ manage କରିନେବ ।

ସେଠଜୀ—ବହୁତ ଧନ୍ୟବାଦ, ଜୟନ୍ତବାବୁ !

ଜୟନ୍ତ—କିନ୍ତୁ ଆପଣ ଆଜି ପଚିଶ ହଜାର ଟଙ୍କା ଦେବାପାଇଁ ଶୀଘ୍ର ବ୍ୟବସ୍ଥା କରନ୍ତୁ ।

ସେଠଜୀ—( ହଠାତ୍ ଯେମିତି ଆକାଶରୁ ପଡ଼ିଗଲେ ) ରୁପେୟା ! ! ! ସମ୍ଭାଲେ ମୁସିବତ୍ । ଓ ତୋ ମୈନେ ଆପ୍‌କୋ ଦେ ଦିୟା ।

ଜୟନ୍ତ—ଆପଣ ଦେଇଚନ୍ତି ମୋଟେ ପଚିଶ ହଜାର । କିନ୍ତୁ ଆପଣଙ୍କୁ ଆହୁରି ପଚିଶ ହଜାର ଦବାକୁ ପଡ଼ିବ ।

ସେଠଜୀ—ସମ୍ଭାଲେ ମୁସିବତ୍ ! ଲେକିନ୍ କୁଁୟ ?

ଜୟନ୍ତ—ଆପଣ କ'ଣ ଖବରକାଗଜ ପଢ଼ନ୍ତି ନାହିଁ ? ଦେଶରେ କୋଉଠି କ'ଣ ହଉଚି, ଖବର ରଖନ୍ତି ନାହିଁ ?

ସେଠିଜୀ—ଆରେ ଭାଇ, ମରନେକୋ ଭି ଟାଇମ୍ ନେହିଁ ମିଲ୍‌ତା ତୋ ଅଖବାର ପଢ଼ିବୋ କିସି ବଖତ୍ । କମ୍‌ତି ଝମେଲା ? କଭି sale tax କା ସାହେବ ଆ' ଯାତା ହୈ ତୋ କଭି incometax କା ବଡ଼ା ସାହେବ ଆ' ଯାତା ହୈ । କଭି policeକା ନବାବସାହେବ ଆ'ଯାତା ହୈ ତୋ କଭି medical student ଲୋଗ୍ ଆ'ଯାତା ହୈ । ଔର ସବ୍‌ସେ ବଡ଼ା ମୁସିବତ୍, ( ଗୁରିଆଡ଼କୁ ଗୁହିଁ ଗୁପା ଗଳାରେ ) ଯବ୍ political partyକା leader ଆ'କର ଗର୍ଦ୍ଦନ ପର ବୈଠ୍ ଯାତା ହୈ । ସେଠ୍ କଣନକାଲ, ନିକାଲେ ରୁପେୟା, ନେହିଁ ତୋ ସମ୍ଭାଲେ ମୁସିବତ୍ ! ହରଦମ କୁଛ୍ ନ କୁଛ୍ ଝମେଲା ! କହିୟେ ଜୟନ୍ତବାବୁ ! ୟେ ସବ ଦୂର୍ହନେ କା ବାଦ ଅଖବାର ପଢ଼ନେକୋ time ମିଲ୍‌ତା ହୈ ମୁଝେ ?

ଜୟନ୍ତ—ବୁଝିଲେ, 'ସେଠଜୀ ! Business କହିଲେ କ'ଣ ଆପଣ ବୁଝନ୍ତି ଗୋଟାଏ ଗଦି, ଗୋଟାଏ ଗୋଦାମ ଆଉ ଗୋଟାଏ ଗୁମାସ୍ତା ? ହେଲେ film businessଟା ଛୋଟ କାରବାର ନୁହେ । Raw materials ପାଇଁ ଆମକୁ ନିର୍ଭର କରିବାକୁ ପଡ଼େ ବିଦେଶ ଉପରେ । ସରକାର devaluation କଲା ପରେ ଆମର production cost କେତେ ବଢ଼ିଯାଇଛି !

ସେଠଜୀ ମୁଝେ କ୍ୟା ମାଲୁମ୍ ? ଓ ମେରା ଇମାନ୍‌ମେ ଘୁସ୍‌ନେକା ବାତ୍ ନେହିଁ ହେ । ଆପନେ କହ୍‌ଥା ଔର ମେ ରୁପେୟା ଡାଲ୍ ଦିଆ । ଅଭି ଫିର ଦେନା ପଡ଼େଗା, ନେହିଁ ତୋ ଓ ପଚିଶ ହଜାର ପାନିମେ ଯାଏଗା । ସମ୍ଭାଲେ ମୁସିବତ୍ !

ଜୟନ୍ତ—ଆପଣ ଠିକ ବୁଝିଚନ୍ତି । ସେଇ ପଚିଶ ହଜାର ଫେରେଇଆଣିବାପାଇଁ ଆପଣଙ୍କୁ ଆଉ ପଚିଶ ହଜାର ଖର୍ଚ୍ଚ କରିବାକୁ ପଡ଼ୁଚି । ତା'ହେଲେ ଆପଣ ଟଙ୍କାଟା କେବେ ଦଉଚନ୍ତି ? ଏଥର ପୁଣି ଆପଣଙ୍କୁ pleader ସହିତ consult କରିବାକୁ ପଡ଼ିବ ନାହିଁ ତ ?

ସେଠଜୀ—ନେହିଁ ନେହିଁ, ଆପ୍ ଔର ମେ, ସ୍ରେ ଦୋନୋକା ବିଚ୍‌ମେ ଓକିଲକା କ୍ୟା ଜରୁରତ୍ ହେ ? ଜରୁରତ ହେ ଲଗ୍ନା ଦେବୀକା । ବୁଲ୍‌ଇଏନା pen ଲେନେକୋ ।

ଜୟନ୍ତ—Pen ? Pen ମୁଁ ଆଣି ଦଉଚି ।

ସେଠଜୀ—କ୍ୟୁଁ ? ଲଗ୍ନା ଦେବୀ କ୍ୟା ଶୋଗୟେଁ ହେ ? ବୁଲ୍‌ଇଏନା !

ଜୟନ୍ତ—ଲଗ୍ନା ଦେବୀ ବାହାରକୁ ଯାଇଚନ୍ତି ।

ସେଠଜୀ—ବାହାର୍ ? କନ୍‌ନା ଦୂର ?

ଜୟନ୍ତ—ଆଜ ତ ଙ୍କର outdoor shooting. ସେ ଡାକବଙ୍ଗଳାରେ makeup ନଉଚନ୍ତି ।

ସେଠଜୀ—ସମ୍ଭାଲେ ମୁସିବତ୍ ! ଠିକ୍ ହେ, pen ଲଗାଏ ! ( ନିଜ ଇଚ୍ଛା ବିରୁଦ୍ଧରେ ଯେପରି chequeରେ sign କଲେ )

ଜୟନ୍ତ—( ଚେକ୍ ନେଇ ) Many thanks ! ଆପଣ ଏଥର ନିଶ୍ଚିନ୍ତ ହୋଇ ରହିପାରନ୍ତି । Business will carry on. ମୁଁ shootingକୁ ବାହାରିଲି । ଆପଣ ଏଥର ଆସନ୍ତୁ ।

ସେଠଜୀ—( ଯାଉଁ ଯାଉଁ ) ହଁ, ମୁଝେ ଯାନାହିଁ ପଡେଗା । ନେହିଁ ତୋ ଉଧର ଗଡମେ ଝମେଲା ହୋଇଯିବ । ( ଫେର ) ଆଚ୍ଛା, ଲଗ୍ନା ଦେଖି ବାହାରସେ କବ୍ ଲୌଟେଙ୍ଗେ ?

ଜୟନ୍ତ—ଫେରିବାର programme କିଛି ଠିକ୍ ନାହିଁ । ହୁଏତ ଟିକରପଡା ବଙ୍ଗଳାରେ shooting ସରିଲା ଯାଏ ଆମକୁ ରହିବାକୁ ପଡ଼ିବ ।

ସେଠଜୀ—ସମ୍ହାଲେ ମୁସିବତ୍ର ! ( ଚାଲିଗଲେ )

ଜୟନ୍ତ—ରଚନା, ରଚନା ! (ଚେକ୍ଟା ବ୍ୟାଗ୍‌ରେ ରଖୁଥିଲେ )

ରଚନା—( ଆସି ) ବାବୁ !

ଜୟନ୍ତ—ମୁଁ ବାହାରିଲି । ( Bag ରେ କାଗଜପତ୍ର ପୂରାଇ ପୂରାଇ ) ତୁ ଘରେ ଥିବୁ । ଯଦି କିଛି ଦରକାର ହୁଏ, phone କରିବୁ । କେହି ଆସିଲେ କହିବୁ ମୁଁ ଟିକରପଡ଼ା ବଙ୍ଗଳାରେ ଅଛି; ହୁଏତ ଆସି ନ ପାରେ । ଜରୁରୀ ଦରକାର ଥିଲେ ମତେ ସେଇଠି ଦେଖା କରିବେ ।

ରଚନା—ଅଜ୍ଞା ! ( ବ୍ୟସ୍ତ ଭାବରେ ପଶି ଆସିଚନ୍ତି ରାଜୀବ )

ରାଜୀବ—ଅଚ୍ଛା, ଜୟନ୍ତବାବୁ ! ଆପଣଙ୍କୁ ଉପଦ୍ରବ କରିବାକୁ ଆଉ କେହି ମିଳିଲେ ନାହିଁ, ଶେଷରେ ଏ ଗରିବ ଲେଖକଟା ସାଙ୍ଗରେ ଥଟ୍ଟା କରି ବସିଲେ ?

ଜୟନ୍ତ—କ'ଣ କହିବାକୁ ଚାହାନ୍ତି ?

ରାଜୀବ—ଯାହା କହିବାର କଥା, ଆପଣ ବସିଲେ ତ କହିବି ?

ଜୟନ୍ତ—Outdoor shooting ଟିକରପଡ଼ାରେ···ମୁଁ ବାହାରିଚି । ଯାହା କହିବାର ଅଛି, ଆସିଲେ କହିବେ । ମୁଁ ବଡ଼ busy.

ରାଜୀବ——ମୁଁ ଜାଣେ, ଆପଣ busy, ସବୁବେଳେ busy. ଦେଶର କଳା ଆଉ କଳାକାରମାନଙ୍କ ପାଇଁ ଆପଣଙ୍କ ହୃଦୟରେ ଅନେକ ଦରଦ, ଅନେକ ସହାନୁଭୂତି । କିନ୍ତୁ ମୋ ଭଳି ଦରିଦ୍ର ଲୋକ ସେଥିରୁ ବଞ୍ଚିତ ହେବ କାହିଁକି, ମୁଁ ତ ବୁଝି ପାରୁନି ?

ଜୟନ୍ତ—ଆପଣଙ୍କୁ ଆଜି ଏଠିକି ଗଳ୍ପ ଲେଖିବାକୁ ଡକାଯାଇନାହିଁ ।
( ଚାଲିଯାଉଥିଲେ )

ରାଜୀବ— ବାଟ ଓଗାଳି ) ମୁଁ ବି ଏଠିକି ପାଗଳାମି କରିବାକୁ ଆସିନି !

ଜୟନ୍ତ—ତା'ହେଲେ କ'ଣ କରିବାକୁ ଆସିଛନ୍ତି ?

ରାଜୀବ—ମୋ ସାଙ୍ଗରେ ଏମିତି ଧୋକାବାଜି କାହିଁକି ?

ଜୟନ୍ତ—ଧୋକାବାଜି ?

ରାଜୀବ—ନୁହେଁ ଆଉ କ'ଣ ? Bank accountରେ ଆପଣଙ୍କର ଟଙ୍କା ନାହିଁ, ଆପଣ ଏକଥା ଜାଣି ସୁଦ୍ଧା ମତେ ମୋର ପ୍ରାପ୍ୟ ବାବଦକୁ ଏ ଚେକ୍‌ଟା ଦେଇଛନ୍ତି କାହିଁକି ?

ଜୟନ୍ତ—ଦେଖି ଚେକ୍‌ଟା ! ( ରାଜୀବଙ୍କ ହାତରୁ ଚେକ୍‌ଟା ନେଇ ଚିରି ଟିକି ଟିକି କରି ଫିଙ୍ଗିଦେଲେ )

ରାଜୀବ · ଜୟନ୍ତବାବୁ ! ! ( ଚିତ୍କାର କଲେ )

ଜୟନ୍ତ—ଆଜିଠୁ company ଉପରେ ଆପଣଙ୍କର କିଛି ପ୍ରାପ୍ୟ ନାହିଁ । ଚାଲିଯା'ନ୍ତୁ !

ରାଜୀବ—ଜୟନ୍ତବାବୁ ! ଆପଣ ଜାଣିଛନ୍ତି, ମୋ ସ୍ତ୍ରୀ ଡାକ୍ତରଖାନାରେ । ତା'ର ଅବସ୍ଥା ଅତି ଖରାପ । ତା ପାଇଁ ଔଷଧ ଦରକାର, ଫଳ ଦରକାର, ରକ୍ତ ଦରକାର । ଆପଣ ଦୟା କରି ଟଙ୍କାଟା ଦିଅନ୍ତୁ ।

ଜୟନ୍ତ—କହୁଛି ତ କମ୍ପାନୀ ଉପରେ ଆପଣଙ୍କର ପ୍ରାପ୍ୟ ଆଉ କିଛି ନାହିଁ ! ଚାଲିଯା'ନ୍ତୁ । ନ ହେଲେ ବାଧ୍ୟ ହେଇ···ରତନା ! ( ରତନା ଆସିଛି )

ଗୁଣୀବ—ମତେ ଧକ୍କା ଦେଇ ଘରୁ ବାହାର କରିଦଅନ୍ତୁ । ହେଲେ ମୋ ଟଙ୍କାଟା ଦେଇଦଅନ୍ତୁ । ନ ହେଲେ ମୋ ସ୍ତ୍ରୀ ମରିଯିବ ।

( ଜୟନ୍ତଙ୍କ ଗୋଡ଼ ଧରି ଜୟନ୍ତବାବୁ, ଦୟା କରନ୍ତୁ !

ଜୟନ୍ତ Get out, I say ! ( ଗୁଣୀବ ତଳେ ପଡ଼ିଗଲେ ) ରତନା ! ଗୁଣୀବବାବୁଙ୍କୁ gate ଟା ଦେଖେଇ ଦେ ! ( କହି ଗ୍ଲଲଗଲେ )

ରତନା—( ଗୁଣୀବବାବୁଙ୍କ ନିକଟକୁ ଆସି ଡାକିଲା ) ବାବୁ, ବାବୁ, ବାବୁ !

ଗୁଣୀବ—ହାଃ, ହାଃ, ହାଃ···

[ ମଞ୍ଚରୁ ଆଲୋକ ଲିଭିଗଲା ଓ ପରେ ପରେ ଜଳିଉଠିଲାବେଳକୁ ଦେଖାଗଲା, ଲଗ୍ନା 'ଆମ୍ରପଲ୍ଲୀ'ର ସାଜସଜ୍ଜା ନେଇ ନାଚୁଛି । ଅନାମ ବୋକାଙ୍କ ଭଳି ବସି ନାଚ ଦେଖୁଛି । ଲଗ୍ନା ନାଚସାରି

ଲଗ୍ନା—କୁହ, କିମିତି ଲାଗିଲା ?

ଅନାମ—ନା, ବଢ଼ିଆ ହେଇଛି । ଆମ ଗାଁରେ ଗୋଟାଏ ଅପେରା ପାର୍ଟି ଅଛି ଯେ ସେମାନଙ୍କ ମୋଟେ ନାଚଜାଣନ୍ତି ନାହିଁ । ମୁଁ ଏଥର ଗାଁକୁ ଗଲେ ତାଙ୍କ ଓସ୍ତାଦଙ୍କୁ କହିବ, ସେ ଏଠିକି ଆସି ଶିଖିଯିବେ !

ଲଗ୍ନା—ନା, ଦୟାକରି ତାଙ୍କୁ ଏଠିକି ଡାକିବ ନାହିଁ । ବରଂ ତାଙ୍କୁ କହିବ, ସେ 'ଆମ୍ରପଲ୍ଲୀ' ଛବିଟା release ହେଲେ ଦେଖିନେବେ ।

ଅନାମ—ଅଚ୍ଛା, ଏଇ ନାଚଟା ଫଟୋରେ କ'ଣ ଠିକ୍ ଇମିତି ଦେଖାଯିବ ?

ଲଗ୍ନା—ଫଟୋରେ ଆହୁରି ସୁନ୍ଦର ଦେଖାଯିବ । Shooting ବେଳେ ଯୋଉସବୁ ଲାଇଟ୍ ଦିଆଯାଏନା···

ଅନାମ—ସୁଟିଙ୍ଗ୍ ?

ଲଗ୍ନା—ହଁ, shooting ! ବୁଝିପାରିଲ ନାହିଁ ? ମାନେ, ସିନେମାନେ ଛବି ଉଠେଇବା ।

ଅନ୍ଧକାରର ପୂରବୀ

ଅନାମ—ବୁଝିଲି । ଫଟୋଉଠା କାମେରା ନେଇ ତ ?

ଲଗ୍ନା—ହଁ, ସେଇ କ୍ୟାମେରା ଆଗରେ ଡାଇଲଗ ସବୁ ମୁଖସ୍ଥ କରି କହିବାକୁ ପଡ଼େ । ଗୋଟେ ଭୁଲ ହେଲେ ଚଳିବ ନାହିଁ । ସେଇଟା ତ stage ନୁହେଁ ଯେ prompting ହବ । ଥରେ କ୍ୟାମେରା start ହେଲା ମାନେ ସବୁ ଚୁପ୍‌ଚାପ୍ ।

ଅନାମ—ସେଇଠୁ ?

ଲଗ୍ନା—ସେଇଠୁ light, sound ସବୁ ରେଡି ହେଇଯାଏ । Artistମାନେ ବି makeup ନେଇ ready ହେଇଯାନ୍ତି । ସେଇଠୁ Director କୁହନ୍ତି, light sound start । ତା'ପରେ clap boy ଆସି clap stick ଦେଇଯାଏ । ଅଭିନୟ ଆରମ୍ଭ ହେଇଯାଏ । ଯଦି ଅଭିନୟ Directorଙ୍କ ମନକୁ ପାଏ, ସେ କୁହନ୍ତି Okay !

ଅନାମ—ଆଉ ଯଦି ମନକୁ ନ ପାଏ ?

ଲଗ୍ନା—ତା'ହେଲେ କୁହନ୍ତି, cut, cut, cut !

( ପ୍ରବେଶ କଲେ ଜୟନ୍ତ ଅନ୍ୟ ପୋଷାକରେ, ଲଗ୍ନାକୁ ଥଟ୍ଟା କରି )

ଜୟନ୍ତ—ଘରେ ବସି cut ଆଉ start କହିଲେ ସେ କ'ଣ ବୁଝିପାରିବ ? କାଠ କାରଖାନାରେ ବୃକ୍ଷର କଳ ଦେଖିବ; ଉଦନଗର ବାଜରେ ଇଲେକ୍‌ଟ୍ରିକ୍ କରତର lyrics ଶୁଣିବ । କାଲି ଆଗରେ ମୁଁ ନ ଯିବେଇ ତାକୁ ହନେ studioକୁ ନେଇଆସ । ସେଠି କିପରି କାମ ଚାଲିଛି, ଦେଖୁ ।

ଅନାମ—Studio ମାନେ କ'ଣ ?

ଜୟନ୍ତ—ବାଃ, ଚମତ୍କାର ! Studio ମାନେ ଜାଣିନାହୁଁ କି ? ଆଉ ଲଗ୍ନା ତତେ ନେଇ start, cutରେ ପହଞ୍ଚେଇଲାଣି ।

ଲଗ୍ନା—କାହିଁକି ? Studio କଥା ମୁଁ କହି ନ ଥିଲି, ସେଇ ଯୋଉଠି ସିନେମାର ଫଟୋ ଉଠାଯାଏ ?

ଅନାମ—ହଁ, ଯୋଉଠି ବଡ଼ ବଡ଼ ଲାଇଟ୍‌ସବୁ ଥାଏନା ? ହଁ ଜାଣିଛି ।

ଜୟନ୍ତ—ଲଗ୍ନା ! ତମ ଗୁଣଟି intelligent. କିନ୍ତୁ memory power ଟିକେ କମ୍ । ମାନେ, ଟିକଏ ବୋକା ।

ଲଗ୍ନା—Outdoor ଗୁଡ଼ା ତମେ ଖୁବ୍ ଆସିଲ ଯେ ?

ଜୟନ୍ତ—ତୁମେ ବିନା ତମ ଖେଳ୍ ସବୁଗଲ୍ ଦେଖିଲ୍ ଫେରି ଖୁବ୍ ଆସିଲ ! ମତେ ଖୁଣ୍ଡୁଚ କଏ ? ଆଜି ସମସ୍ତଙ୍କର payment. ସେଥିପାଇଁ ଆସିବାକୁ ପଡ଼ିଲା । ମୋ Bank cheque ବହିଟା ଆଣିନି ! ନାମ ଛୁଟେଇଦେଇ ଆସେଁ । ( ହଠାତ୍ ଲଗ୍ନା ଖାଉଥିବା ଅଧା ବାରମଜା ପ୍ୟାକେଟ୍‌କୁ ଦେଖି ସେଇଟା ବାରମଜା ନା ? )

ଲଗ୍ନା—ହଁ ।

ଜୟନ୍ତ—ଅନାମ ଆଣି ଦେଇଚ ନିଶ୍ଚୟ ?

ଲଗ୍ନା—ତମେ ତ ଉତ୍ତନାକୁ ମନା କରିଚ । ଆଉ କଣ କରନ୍ତି ? ମୁଁ ବାଧ ହୋଇ ଅନାମ ହାତରେ···

ଜୟନ୍ତ ଆଉ, ବୁଝିଲି । ଲୁଚେଇ ଲୁଚେଇ ଅନାମ ହାତରେ ଏଇ ଖେଳ ବାରବାର ଖୁଆଉଚ, ନା ?

ଲଗ୍ନା—ତମେ ଆସିଚ ଚେକ୍‌ବହିଟା ନବାକୁ । ମୋ ସାଙ୍ଗରେ ଅନ୍ତତଃ ଆଜି ଦିନଟା କାଳ ନ କଲେ ଚଳନ୍ତା ନ ? ରୁହ, ତୁମକୁ ଚେକ୍ ବହିଟା ଆଣି ଦଉଚ । ( ଭିତରକୁ ଗଲା )

ଜୟନ୍ତ—ଆଚ୍ଛା, ଅନାମ ! ତୁ ଜାଣୁ ଜାଣୁ ଏ ଯିଆଜି ବାରମଜା ଗୁଡ଼ାକ ଏଠି ଆଣି ପହଞ୍ଚଉଚୁ ? ଜାଣିଚୁ, ଏଗୁଡ଼ାକ ହେଲା poison ?

ଅନାମ—ଏଁ, ବାପ । । ମୁଁ କ'ଣ କରିବି ? ମତେ ବାଧ କଲେ, ଜୋର ଜବରଦସ୍ତି କଲେ । ଗୁଣନସୂମ ପକେଇ କହିଲାରୁ···

ଜୟନ୍ତ—ଓଃ, ତୋର ସେଇଠୁ ଦୟା ହେଲା, ତଥାସ୍ତୁ କହିଦେଲୁ ! ଜାଣିଚୁ, ତା'ର ଦେହ ଯଦି ଖରାପ ହୁଏ କଣ ହବ ?

ଅନାମ—କ'ଣ ହବ ?

ଜୟନ୍ତ—Shooting ବନ୍ଦ ହେଇଯିବ । Producerର ହଜାର ହଜାର ଟଙ୍କା ଲୋକସାନ ହେଇଯିବ, ଜାଣିଚୁ ?

ଅନାମ—Producer କଣ ?

ଜୟନ୍ତ—ଇସ୍, ମଫସଲ୍ ଭୂତ କୋଉଠିକାର । ଏ ସବୁ ବୁଝିବ ଭଲ ମୁଣ୍ଡ ତୋର ହେଇନାହିଁ । ଆଜଠୁ କହୁଚ, ଆଉ ଦିନେ ଯଦି ପିଆଜ ବାରମଜା ଆଣି ଦେଇଚୁ ତ, ଦେଖିବୁ !

ଲଗ୍ନା—( ଚେକ୍ ବହି ନେଇଆସିଲା ) ହେଲା ବାବା, ହେଲା ! ମୁଁ ଆଉ ଦିନେ ହେଲେ ଏ ନଷିଦ୍ଧ ବାରମଜା ଖାଇବିନ । ନଅ, ତୁମ ଚେକ୍ ବହି ନଅ ! ( ଚେକ୍ ବହି ଜୟନ୍ତଙ୍କ ହାତକୁ ବଢ଼େଇଦେଲା । ଜୟନ୍ତ ବହିଟା ନେଇ ବ୍ୟାଗ୍‌ରେ ରଖିଲେ )

ଜୟନ୍ତ—ମୁଁ ଯାଉଚି, ସିଆଡ଼େ ଲୋକଗୁଡ଼ାକ payment ପାଇଁ ଜଗି ବସିଥିବେ !

ଲଗ୍ନା—ଆଜ ସୋମବାର; ଅମରେଶ୍ୱର ମନ୍ଦିରକୁ ମୋର ଯିବା କଥା ।

ଜୟନ୍ତ—ମୁଁ ତ ଆଜ ବଡ଼ busy. ତମେ ବରଂ ଅନାମକୁ ନେଇ ଚାଲିଯିବ । ହଁ, ଦେଖ ଭଲା ଚଷମାଟା ପିନ୍ଧି ଯିବ । ମୁଣ୍ଡରେ ଓଢ଼ଣା ଦବ । ନ ହେଲେ ସେଠି ଫେର୍ ଲୋକେ ତୁମକୁ ଘେରିଯିବେ । ସେଠୁ policeକୁ ଡକାଯାଇ ପଡ଼ିବ । ଆଉ policeର ନାଁ ଶୁଣିଲେ ତୁମର ଏଇ ମଫସଲ୍‌ଆଟି ସିଧା ତୁମକୁ ସେଇଠି ଛାଡ଼ି ପଳେଇଆସିବ ।

ଲଗ୍ନା—ନା, ନା, ମୁଁ ଡେଣରେ ଯିବି, ଆଉ ଖୁବ୍ ସାବଧାନରେ ଯିବି ।

[ ଜୟନ୍ତ ଚାଲିଗଲେ । ଲଗ୍ନା ଅନାମକୁ କହିଲା, ମୁଁ ଲୁଗା ବଦଳେଇ ଆସେ । ଦେଉଳ ଆଡ଼େ ଯିବା ]

ଅନାମ—କ'ଣ ସବୁ ସୋମବାର ତମେ ଅମରେଶ୍ୱର ଯାଅ ?

ଲଗ୍ନା—ହୁଁ । ଖାଲି ଅମରେଶ୍ୱର ଯାଏ ନାହିଁ; ଅମରେଶ୍ୱର ନା କହି ଯୁଆଡ଼େ ଇଚ୍ଛା ଯାଇ ବୁଲିଆସେ ।

ଅନାମ—ତା' ହେଲେ ତମେ ଜୟନ୍ତବାବୁଙ୍କ ମିଛକଥା କହି ଠାକୁରଙ୍କ ଦେଉଳକୁ ନ ଯାଇ···?

ଲଗ୍ନା—ହଁ, ଟିକଏ ବଞ୍ଚିବାପାଇଁ, ଟିକଏ ନିଃଶ୍ୱାସ ନବାପାଇଁ ମଣିଷକୁ ଇମିତି ମିଛ କହିବାକୁ ହୁଏ । ତୁମେ ଜାଣିନ, ମୁଁ ଏଇ ସ୍ୱର୍ଣ୍ଣ କାଚ୍ଚ ଭିତରେ କି ଅଣନିଃଶ୍ୱାସୀ ହେଇ ପଡ଼େ ! ତମେ କ'ଣ ବୁଝିବ ? ଗୋଟେ ପଞ୍ଜୁରି ପକ୍ଷୀର ସ୍ୱାଧୀନତା ବି ମୋର ନାହିଁ !

ଶୁଭେନ୍ଦୁ—( ହଠାତ୍ ପ୍ରବେଶ କରି ) Good evening, Miss ଲଗ୍ନା ଦେବୀ ! ଆରେ ବାଃ, ଚମତ୍କାର ! ଆଜି ତ ଏକଦାରେ ଯୌବନବାସିକ ଆମ୍ରପଲ୍ଲୀ !

ଲଗ୍ନା—( ନିଜର ଲୁଗା ସଜାଡ଼ିନେଇ ) ନା, outdoor shooting ସାରି ମୁଁ ସିଧା ଫେରୁଚି । ଆଉ ଖବର କ'ଣ, କୁହନ୍ତୁ ?

ଶୁଭେନ୍ଦୁ—ଆପଣଙ୍କ ପାଇଁ ବଡ଼ଟେ ସୁ-ଖବର ନେଇ ମୁଁ ଆସିଚି ।

ଲଗ୍ନା—ଶୁଭ ଖବର ?

ଶୁଭେନ୍ଦୁ—ଏଇ ବର୍ଷ କାର୍ତ୍ତିକ ଉତ୍ସବରେ ଆପଣଙ୍କୁ Film Fair Association ତରଫରୁ ଗୋଟାଏ ସମ୍ବର୍ଦ୍ଧନା ଜଣେଇବାର ବ୍ୟବସ୍ଥା ହେଇଚି । ମୁଁ ଆସିଲି ଆପଣଙ୍କୁ ସେଇ ଖବରଟା ଜଣେଇଦବାକୁ ।

ଲଗ୍ନା—ଛି, ଛି, କାହିଁକି ଆପଣ ମିଛରେ ମୋ ପାଇଁ ଏସବୁ ବ୍ୟବସ୍ଥା କରୁଚନ୍ତି, କହିଲେ ?

ଶୁଭେନ୍ଦୁ—ନା, ନା, ସେକଥା କହିଲେ ଚଳିବନି । ମୁଁ ଆପଣଙ୍କ ତରଫରୁ କର୍ମକର୍ତ୍ତାମାନଙ୍କୁ କଥା ଦେଇସାରିଚି । ଆପଣଙ୍କ ସହିତ ମୋର intimacyଟା ସହରସାରା ସମସ୍ତଙ୍କୁ ପ୍ରାୟ ଜଣା ଅଛି । ଆପଣ ନ ଗଲେ ମୋ position କ'ଣ ହବ ଭାବିପାରୁଚନ୍ତି ? ସେଇଥିପାଇଁ, ମନେ କରନ୍ତୁ ଏଇଟା ହେଉଚି ମୋର prestige issue. କୁହନ୍ତୁ, ଆପଣ ନିଶ୍ଚୟ ଯିବେ ?

ଲଗ୍ନା—ମତେ କ୍ଷମା କରନ୍ତୁ । ସାମାନ୍ୟ ଜଣେ ଅଭିନେତ୍ରୀ ମୁଁ । ମୁହଁରେ କିଛି ରଙ୍ଗ ବୋଳି ଗୁଡ଼ିଏ ଆଲୁଅର ଇନ୍ଦ୍ରଜାଲ ଭିତରେ ଲୋକଙ୍କ ଆଗରେ କିଛିକ୍ଷଣ ପାଇଁ ମିଛ କୃତ୍ରିମର ମଣ୍ଡାଚକା ଖେଳେଇଦିଏ । ହୁଏତ ସବୁ କିଛି ଭୁଲେଇଦିଏ । କିନ୍ତୁ ସେଥିରେ କ'ଣ ଇମିତି ଗର୍ବ କରିବାର ଅଛି ଯେ ମୁଁ ନିଜେ ଯାଇ ଲୋକଙ୍କ ଆଗରେ ଅଭିନନ୍ଦନ ପାଇଁ ଠିଆ ହେବି ? ନା, ମତେ ଲଜ୍ଜିତ କରନ୍ତୁ ନାହିଁ, ଶୁଭେନ୍ଦୁ ବାବୁ ! ଇଏତ ମୋ ଅନ୍ତରର କଥା ।

ଶୁଭେନ୍ଦୁ—କିନ୍ତୁ ଏଥିରେ ଲଜ୍ଜିତ ହେବାର କ'ଣ ଅଛି ? ଆପଣ ମୋ ଗାଡ଼ିରେ ଯିବେ, ଆଉ ଆସିବେ । ଖାଲି stage ଉପରେ ଦୁଇ ମିନିଟ । କାର୍ତ୍ତିକ ପୂର୍ଣ୍ଣିମା ଉତ୍ସବଟା ସାର୍ଥକ ହବ ଆପଣଙ୍କ ଉପସ୍ଥିତିରେ ।

ଲଗ୍ନା—ନା, କାର୍ତ୍ତିକ ପୂର୍ଣ୍ଣିମା ଦିନ ମୁଁ ଧବଳେଶ୍ୱର ଯିବି ବୋଲି ଅନାମବାବୁଙ୍କୁ କଥା ଦେଇସାରିଚି ।

ଶୁଭେନ୍ଦୁ—ଅନାମବାବୁ ! ! !

ଲଗ୍ନା—sorry ! ଏତେବେଳଯାଏ ଚିହ୍ନେଇଦେଇନି । ଏଇ ହେଉଚନ୍ତି ଅନାମବାବୁ, ମୋର ବନ୍ଧୁ । ଆଉ ଅନାମବାବୁ, ଇଏ ହେଉଚନ୍ତି ଶୁଭେନ୍ଦୁବାବୁ, ମୋର ଶୁଭାକାଂକ୍ଷୀ । ବଡ଼ ଚମତ୍କାର ଲୋକ । ଦେଖନ୍ତୁ, ଆପଣମାନେ ଏଥର ନିଜ ନିଜ ଭିତରେ କଥା ହୁଅନ୍ତୁ, ତ ମୁଁ ଆସୁଚି ।

( କହି କହି ଭିତରକୁ ଗଲା )

ଶୁଭେନ୍ଦୁ—(ନିଜର ମନର ଭାବକୁ ଲୁଚିରଖି ) ତା'ହେଲେ ଆପଣ ହେଉଚନ୍ତି ଅନାମବାବୁ, ଆଉ ଆପଣଙ୍କ ସାଙ୍ଗରେ ଲଗ୍ନାଦେବୀଙ୍କର ଧବଳେଶ୍ୱର ଯିବାପାଇଁ ସବୁ ଠିକ୍ ଠାକ୍ ହେଇଯାଇଚି । Oh, how lucky you are !

ଅନାମ— କ'ଣ କହିଲେ ? ?

ଶୁଭେନ୍ଦୁ—କ'ଣ, ଲଞ୍ଚରେ ସମସ୍ତଙ୍କ ସହିତ ଯାଉଚନ୍ତି, ନା ଦୁଇ ଜଣଙ୍କ ପାଇଁ ଗୋଟାଏ ସ୍ପେଟ ନୌକା reserve ହେଇଚି ?

ଅନାମ—ମୁଁ କିଛୁ ଜାଣିନାହିଁ । ଲଗ୍ନା ଦେବୀ ଖାଲି କହୁଥିଲେ ପିବା କଥା ।

ଶୁଭେନ୍ଦୁ—କିଛୁ ଜାଣିନାହାନ୍ତି ? ବାଃ, ଚମତ୍କାର ଅଭିନୟ କରି ପାରନ୍ତି ଆପଣ ? ଚେହେରାଟା ବି ବେଶ୍ innocenf ! ଆଚ୍ଛା ମହାଶୟ ! କେବେଠୁ ଆସି ଜମିଗଲେ ଏଠି ? ଆଗରୁ ଚିହ୍ନା ଥିଲା ନା ହଠାତ୍ ?

ରତନା—( ବାହାରୁ ଆସିଛି । ହଠାତ୍ ଶୁଭେନ୍ଦୁଙ୍କୁ ଦେଖି ନମସ୍କାର କରିଛି ) ହଇହେ ଶୁଭେନ୍ଦୁବାବୁ, ଆପଣ କେତେବେଳେ ଆସିଲେ ? କୁହନ୍ତୁ, କ'ଣ ଦରକାର ? ଚା, କଫି, ସରବତ, କ'ଣ ଆଣିବି କୁହନ୍ତୁ···ଆପଣଙ୍କ ଚର୍ଚ୍ଚା ଠିକ୍ ଭାବରେ ନ କଲେ ବାବୁ ମୋ ମୁଣ୍ଡଟାକୁ ଖାଇଦେବେ ।

ଶୁଭେନ୍ଦୁ—ନା; ମୋ ପାଇଁ କିଛୁ ଦରକାର ନାହିଁ । ଏଇ ମହାମାନ୍ୟ ଅତିଥି ଅନାମବାବୁଙ୍କ ପାଇଁ ଯାହା ଆଣିବ ଆଣ । କ'ଣ, ଅନାମବାବୁ ! କ'ଣ ଦରକାର ? କୋକାକୋଲା, କଫି, ନା ଚା' ?

ଅନାମ—ଆଜ୍ଞା, ନା । ଚା' ଖାଇଲେ ମୋ ଜିଭ ପୋଡ଼ିଯାଏ । ଥରେ ଖାଇଥିଲି ସେ ତିନଦିନଯାଏ ତରକାରିର ସ୍ୱାଦ ଜାଣିପାରିଲି ନାହିଁ ।

ଶୁଭେନ୍ଦୁ—ଶୁଣିଲୁ, ଶୁଣିଲୁ ରତନା ? ଚା' ଖାଇଲେ ଅନାମବାବୁଙ୍କ ଜିଭ ପୋଡ଼ିଯାଏ । ( ହସିଲେ ତାଚ୍ଛଲ୍ୟ କରି )

ରତନା—ଆଜ୍ଞା, ଆପଣ ସିନା ଆଜି ତାଙ୍କୁ ଚିହ୍ନିଲେ, ମୁଁ ପରା ପିଲାଟି ଦିନରୁ ତାଙ୍କୁ ଦେଖିଆସିଛି ।

ଶୁଭେନ୍ଦୁ—ପିଲାଟିଦିନରୁ ? ( ଆଶ୍ଚର୍ଯ୍ୟରେ )

ରତନା—ହଁ; ଆମରି ଗାଁରେ ତାଙ୍କ ଘର । ତାଙ୍କ ବାପା ଗୁରୁଚରଣ ପଣ୍ଡା ଗାଁ ସ୍କୁଲର ମାଷ୍ଟର । ଯୋଉଁ ମାଡ଼ ମାରନ୍ତି, ଆଜ୍ଞା ! ପିଠି ଫଟେଇ ଦିଅନ୍ତି । ହେଲେ ଅଜ୍ଞା, ଜ୍ଞାନୀ ଲୋକ; ପୁଣ୍ୟବନ୍ତ ଲୋକ ।

ଶୁଭେନ୍ଦୁ—ତମ ଗାଁ ମାଷ୍ଟର ଗୁରୁଚରଣ ପଣ୍ଡାଙ୍କ ପୁଅ ଅନାମ ପଣ୍ଡା ! ହେଲେ, ଏଠି କମିତି ?

ରତନା—ଉଠନ ମତେ ଦେଖା କରିବାକୁ ଅସିଥିଲେ । ଚହ୍ମା ପରିଚୟ ହୋଇଗଲା । ଏଇନେ ଦେଖନ୍ତୁ ତାଙ୍କୁ ନ ଦେଖିଲେ ପାଣି ପିଉନାହାନ୍ତି ! ଅନାମବାବୁଙ୍କ ସୁଧାର ପଣିଆ ଦେଇଙ୍କ ମନକୁ ଛୁଇ ପାଇଛି ।

ଶୁଭେନ୍ଦୁ—ତା'ହେଲେ ବେଶ୍ ଗ୍ରୁଜଯୋଟକ ! I am jealous of you, young man, you are really fortunate. କ'ଣ, ବିବାହିତ ନା ଅବିବାହିତ ?

ରତନା—କ'ଣ ଆଙ୍କ ବାହାଘର କଥା ପଚାରୁଚନ୍ତି ? ନା, ହାତକୁ ଦ'ହାତ ହୋଇନ । ହେଲେ ଗାଁ ଝିଅ କନକ ସାଙ୍ଗେ କଥା ଛୁଉଁଯାଇଚ । କନକଟି ଦେଖିବାକୁ ସୁନା ଖଣ୍ଡିକା । ଆଉ ଗୁଣ ? ମହାମଣ୍ଡଳରେ କୋଉଠି ନ ଥିବ । କୋଉ କାମରେ କେହି ବାଛୁବେନ ତାଙ୍କୁ ।

ଶୁଭେନ୍ଦୁ—ସିଆଡେ ଯଦି କନକ ସାଙ୍ଗେ କଥା ଛିଣ୍ଡିଯାଇଚ ତେବେ ଏଠି କାହିଁକି ? କ'ଣ ମତଲବ ? Two birds in one bullet ?

ଅନାମ—ଆଜ୍ଞା, ମତେ କହୁଚନ୍ତି ?

ଶୁଭେନ୍ଦୁ—ନା, ତୁମକୁ କହୁନ; ରତନାକୁ କହୁଚ । ତମ ଅନାମବାବୁ ଯଦି ଏଠିକି ଆସିଚନ୍ତି, ନା'ହେଲେ ତାଙ୍କୁ କୁହ ଏ ବେଶପୋଷାକ ବଦଳେଇ ଏଠିକି ଆସନ୍ତୁ । ଏ ଘର ଲକ୍ଷ୍ମୀଦେବୀଙ୍କର । ଆଉ ଏଠିକି ଯୋଉମାନେ ଆସନ୍ତି, ତାଙ୍କର ମାନସମ୍ମାନ ଅଛି; Aristocracy ଅଛି, Society ଅଛି, status ଅଛି । ଇମିତି ବେଶ ପୋଷାକ ପିନ୍ଧି ଆସିଲେ ଆମର ମାନସମ୍ମାନ ଯେତିକି ନଷ୍ଟ ନ ହବ, ବେଶି ନଷ୍ଟ ହବ ଲକ୍ଷ୍ମୀଦେବୀଙ୍କର । ଏ କଥା ମନେ ରଖିବା ଉଚିତ । ( ଅଧୀଷ୍ଟ ହୋଇଉଠୁଥିଲା ଅନାମ । ଶେଷକୁ ସହି ନ ପାରି କାନ୍ଦ କାନ୍ଦ ହୋଇ ବାହାରକୁ ଚାଲିଗଲା । )

ରତନା—ଆରେ ! ବାବୁ କ'ଣ ଉଠି ଚାଲିଗଲେ ! ବାବୁ, ବାବୁ, ଶୁଣିଯାଅ !

( ଡାକି ଡାକି ଅନାମର ପଛେ ପଛେ ବାହାରକୁ ଗଲା )

ଶୁଭେନ୍ଦୁ—( ହସି ଉଠିଲେ ବିକଟାଳ ହସ ) ଅନାମବାବୁ, ଶୁଣିଯାଆନ୍ତୁ, ଶୁଣନ୍ତୁ, Please !

ଲଗ୍ନା—( ହାତରେ ଠାକୁରଙ୍କ ପାଖକୁ ନେବା ଫୁଲ, ବେଲପତ୍ର ଇତ୍ୟାଦି ସହ ପ୍ରବେଶ କରି ) ଚାଲନ୍ତୁ, ମୁଁ ପ୍ରସ୍ତୁତ ହୋଇ ଆସିଛି । ( ହଠାତ୍ ଶୁଭେନ୍ଦୁଙ୍କୁ ଦେଖି ) ଆରେ, ଶୁଭେନ୍ଦୁବାବୁ ! ଆପଣ କ'ଣ ଏ ପର୍ଯ୍ୟନ୍ତ ଯାଇନାହାନ୍ତି ?

ଶୁଭେନ୍ଦୁ—ନା, ଏଇ ଅନାମବାବୁଙ୍କ ସଙ୍ଗେ କିଛି ସମୟପାଇଁ ପରିଚୟ ହୋଇଗଲା । ବସି କିଛି କଥା ହେଉଥିଲୁ । କିନ୍ତୁ କି ଆଶ୍ଚର୍ଯ୍ୟ ଭଦ୍ରଲୋକ ! କଥା କହୁ କହୁ ହଠାତ୍ ଉଠି ଚାଲିଗଲେ ।

ଲଗ୍ନା—( ଆଶ୍ଚର୍ଯ୍ୟ ଓ ରାଗରେ ) ଚାଲିଗଲେ ? ତା' ହେଲେ ଆପଣ ରହିଛନ୍ତି କାହିଁକି ? ଆପଣ ବି ଚାଲିଯାଆନ୍ତୁ ।

ଶୁଭେନ୍ଦୁ—( ରାଗରେ ) ଆଚ୍ଛା, ହଉ, ମୁଁ ଆସୁଚି । ( ଆହତ ଓ ଅପମାନିତ ହୋଇ ଚାଲିଗଲେ । ମନ ଦୁଃଖରେ ଭିତରକୁ ଫେରିଯାଉଥିଲା ଲଗ୍ନା । ହଠାତ୍ ପଶିଆସିଛି ସଙ୍ଗୀବ । ହାତରେ ପୋଲିଓ ବ୍ୟାଗ୍ )

ସଙ୍ଗୀବ—ଲଗ୍ନା । ଦେଖା ! ଆପଣ ମତେ କହୁଥିଲେ, ମୁଁ ଯଦି କେବେ ଛବି ତିଆରି କରେ, ଆପଣ ହେବେ ମୋ ଛବିର ନାୟିକା । ଆଜ ସତରେ ମୁଁ producer ହେବାକୁ ଯାଉଚି ।

ଲଗ୍ନା—( ନିଜ ମନର ଆଘାତଟାକୁ ସମ୍ଭାଳିନେଉଥିଲା )

ସଙ୍ଗୀବ—ଆପଣ ଏ contract formରେ sing କରନ୍ତୁ ।

( କହି contract form ଦେଲା )

ଲଗ୍ନା—ସଙ୍ଗୀବବାବୁ !

ସଙ୍ଗୀବ—Payment କଥା କିଛି ଭାବିବେ ନାହିଁ । I am ready to pay any amount you demand. ( ପେନ୍ ଖୋଲି ବଢ଼ାଉଥିଲା )

ଲଗ୍ନା—ଆପଣମାନେ କ'ଣ ଟଙ୍କା ଛଡ଼ା ଦୁନିଆରେ ଆଉ କିଛି ଜାଣନ୍ତି ନାହିଁ ? ଚାଲିଯାନ୍ତୁ, please leave me alone ! ମୁଁ ଏକା ରହିବାକୁ ଚାହେଁ । ଆପଣଙ୍କର ଟଙ୍କା, କଣ୍ଟ୍ରାକ୍ଟ୍ କିଛି ଦରକାର ନାହିଁ ।

( contract formଟାକୁ ଚିରି ଚିରି କରି ଫିଙ୍ଗିଦେଲା )

ସଙ୍ଗୀବ ·· ଲଗ୍ନା ଦେଖା !!

ଲଗ୍ନା—ଯାଆନ୍ତୁ, ସ୍ବଳ୍ପଯାଆନ୍ତୁ ! ( ଜରୁପାସ୍ତ ହୋଇ ଫେରଗଲେ ସଙ୍ଗୀବ । ଏହି ସମୟରେ ବାହାରେ ଗୀତ ଶୁଭିଲା । ଲଗ୍ନା ଧୀରେ ଧୀରେ ଆଗେଇ ଯାଉଥିଲେ ଘର ଢାଞ୍ଚରେ ସଜା ହୋଇଥିବା କଣ୍ଢେଇ ପାଖକୁ । ଆଖିରୁ ଲୁହ ଝରିଆସିବା ସମୟରେ, ଆଲୁଅ ଲିଭିଲା ।

— ଗୀତ —

ଅବୁଝା ଗୃହକୀ ସିନା ଢାଳେ ଲୁହଧାର
ମେଘ କ ବୁଝିବ ସତେ ମନକଥା ତା'ର । ୦ ।
ସିଏ ତାରେ ଢଏ ଦୁଃଖ ସିଏ ତା ଜଜର, ହୋ···
ଅଛ ଆପଣାର
ମେଘ କ ବୁଝିବ ସତେ ମନକଥା ତା'ର । ୧ ।
ପିଞ୍ଜରା ଭିତରେ ପକ୍ଷୀ କ ସୁଖ ଲଭିବ
ଆପଣା ନୀଡ଼ର ସୁଖ ସରଗ ବଳିବ ।
କଏ ଦେବ ଆଣି ମନଲାଗି ମନ ତାର ହୋ···
କି ଦେବ···
ମେଘ କ ବୁଝିବ ସତେ ମନକଥା ତା'ର । ୨ ।



## ଦ୍ୱିତୀୟ ଦୃଶ୍ୟ

[ ଅନାମର ଘର । ସମସ୍ତ ଗୋଧୂଳି । ବାବୁଲି ଓ ନା'ର ଜେଜେ ନିତ୍ୟାନନ୍ଦ କଥାବାର୍ତ୍ତା ହୋଇ ପ୍ରବେଶ କଲେ ]

ବାବୁଲି—ନା, ନା, କଣ୍ଟେଇ ମୋର ଦରକାର ନାହିଁ । ଗାଡ଼ି ଦରକାର ନାହିଁ । ଚାଲ, ଆମେ ଆମ ଗାଁକୁ ଚାଲିଯିବା; ଏ ଗାଁଟା ଭଲ ନୁହଁ ।

ନିତ୍ୟାନନ୍ଦ—ହଁ, ଯିବା । ହେଲେ ଶଗଡ଼ ଆସୁ, ବଳଦ ଆସୁ ।

ବାବୁଲି—ନାଇଁ, ଆମେ ଚାଲି ଚାଲି ଚାଲିଯିବା ।

ନିତ୍ୟାନନ୍ଦ—ତୁ ପିଲାଲୋକ, ଏତେ ବାଟ କ'ଣ ଚାଲିପାରିବୁ ?

ବାବୁଲି—କାହିଁକି, ମତେ କାନ୍ଧରେ ବସେଇ ନେଇଯିବ !

ନିତ୍ୟାନନ୍ଦ—ଆରେ, ମୁଁ ପରା ବୁଢ଼ା ହୋଇଗଲିଣି । ତତେ ମୁଁ ଏତେ ବାଟ କାନ୍ଧେଇ ନେଇପାରିବ ? ତୁ ଯିନା ମତେ···

ବାବୁଲି- ନାଇଁ, ନାଇଁ, ତମେ ମତେ ଭୁଲେଇଦଉଚ । କାହିଁକି ଆମ ଗାଁ ଛାଡ଼ି ଚାଲିଆସିଲ ? ମୋ ବାପା, ବୋଉ କୁଆଡ଼େ ଗଲେ ?

ନିତ୍ୟାନନ୍ଦ—ସମସ୍ତେ ଅଛନ୍ତି ରେ, ଆସିବେ । ଠାକୁରେ ତାଙ୍କୁ ଫେରେଇ-ଆଣିବେ ।

ବାବୁଲି—ନାଇଁ, ମିଛ କଥା । ମୁଁ ତ ନିତି ଠାକୁରଙ୍କୁ ଫୁଲ ଦେଇ ପଚାରୁଚ, ଠାକୁରେ, ମୋ ବାପା ଜେଲ୍ ଗଲେ କାହିଁକି ? ମୋ ବୋଉ କୁଆଡ଼େ ଗଲା ? ହେଲେ ଠାକୁରେ ତ କିଛୁ କହୁନାହାନ୍ତି ? କହ ଜେଜେ, ମୋ ବୋଉ କୁଆଡ଼େ ଗଲା ?

କନକ—( ଚୂଡ଼ାଚକଟା ଧରି ପ୍ରବେଶ କରି ) ତୋ ବୋଉ ବାଘୁଣୀ ହେଇ ଜୁଆଡ଼େ ପଳେଇଗଲା ।

ବାବୁଲି—ଏଁ. ( କାନ୍ଦି ) ମୋ ବୋଉ ବାଘୁଣୀ ହେଇଗଲା ? ( କାନ୍ଦିଲା )

କନକ—ହଁ, ହବ ନାହିଁ ? ତୁ ସିମିତି ବାଘୁଙ୍କ ପରି ହଉଚୁ । ତୋ ବୋଉ ବାଘୁଣୀ ହେଇଗଲା ।

ବାବୁଲି—ନା, ନା, ମୋ ବୋଉ ବାଘୁଣୀ ହବ ନାହିଁ । ( କାନ୍ଦିଲା )

କନକ—ହଉ ଶୁଣ୍ ଶୁଣ୍; ମୋ କଥା ଶୁଣ୍ ।

ବାବୁଲି—କ'ଣ ?

କନକ—ତୁ ଯଦି ମୋ କଥା ମାନିବୁ, ଭଲ ପିଲା ହବୁ, ତୋ ବୋଉ ଭଲ ହେଇଯିବ ଆଉ ଫେରିଆସିବ ।

ବାବୁଲି—ମୋ ବୋଉ ଫେରିଆସିବ ?

କନକ—ହଁ, ମୋ କଥା ମାନ୍ । ନେଲୁ ଏ ଚୂଡ଼ା ଚକଟାତକ ଖାଇଦେଲୁ !

ବାବୁଲି—( ହାତରେ ଚୂଡ଼ା ଚକଟା ଧରି )

କନକ କ'ଣ ମନ ଖୁସି ତ ? ଯା', ଖାଇଦେଇ, ସେ କୁଣ୍ଡରେ ପାଣି ଅଛି, ହାତ ଧୋଇ ଖେଳିବୁ । ( ବାବୁଲି ଗ୍ଲଲିଗଲା )

ନିତ୍ୟାନନ୍ଦ—( ଆଖିରୁ ଝରିଆସିଥିବା ଲୁହ ପୋଛୁଥିଲେ )

କନକ—ମଉସା, ତମେ କାନ୍ଦୁଚ ?

ନିତ୍ୟାନନ୍ଦ—ହଁ ମା, ଏଇ କାନ୍ଦିବା ଛଡ଼ା ମୋର ଆଉ କଣ ଅଛି ? ସୁନାର ସଂସାର ମୋର ଚୂନା ହେଇଗଲା । କେତେ ଶରଧା କରି ପୁଅକୁ ପାଠ ପଢ଼େଇଥିଲି । ଭଲ ଗ୍ଲକିରି ଖଣ୍ଡେ ବି ମିଳିଥିଲା । ହେଲେ, କରମ ସହିଲା ନାହିଁ । ବଡ଼ ବଡ଼ ଅଫିସରମାନେ ସରକାରୀ ଗୋଦାମରୁ ଜିନିଷ ଉଠେଇ ନେଇଗଲେ । ଶେଷକୁ ଗରିବ କିରାଣୀ ମୁଣ୍ଡରେ ଅଠା ବୋଳାଗଲା । ସୋଉ ପୁଅ ବାପ ମା କୋଳରେ ଅଲିଅଳରେ ବଢ଼ିଥିଲା ସେ ଆଜି···

କନକ—ମଉସା, ଦୁଃଖ ସୁଖ ତ ଲଗିଛି । ନଳ ରାଜା ତ ଫେର ଘାସ କାଟିଥିଲେ ! ରାଜା ହରିଶ୍ଚନ୍ଦ୍ର ତ ପୁଣି ମଡ଼ା ଚଣ୍ଡାଳ ହୋଇଥିଲେ ! ତମ ଦୁଃଖ କ'ଣ ସବୁଦିନ ରହିବ ?

ନିତ୍ୟାନନ୍ଦ—ମୋ ଦୁଃଖକୁ ମୁଁ ଖାତିର କରୁନି, ମା, ସେଇ ସୁନା ପ୍ରତିମା ବୋହୂଟି ପାଇଁ ମୁଁ ଦୁଃଖ କରୁଛି । ଗରିବ ଘରର ମା' ବାପ ଛେଉଣ୍ଡ ଝିଅଟି । ମୁହଁକୁ ଚାହିଁଲେ ପେଟ ପୂରିଯିବ । କୋଟିକରେ ଗୋଟିଏ ଦେଖି ବୋହୂ କରିଥିଲି । ମୋ କପାଳରେ ଏଇଆ ଲେଖା ଥିଲା ଯେ, ସେଇ ବୋହୂ ମାସକୁ ମାସ ଟଙ୍କା ପଠେଇବ, ଆଉ ମୁଁ ଚଳିବି···

କନକ—ହଉ, ମଉସା, ଦୁଃଖ ସୁଖ ତ ସଂସାରରେ ଲଗିଛି । ତାକୁ ଖାଲି ଭାବି ଲାଭ କଣ ? ( ଭିତରକୁ ଚାହିଁ ) ଦେଖିଲ, ଦେଖିଲ ମଉସା, ଟୋକାଟା କିମିତି ପାଣିକୁଣ୍ଡରେ ଯାଇ ପଡ଼ିଲାଣି ! ଶର୍ଦ୍ଦି, କାଶ, ଜର ହେବ ! ଏ ବାବୁଲା ! ଡାକିବି ବାପାକୁ ? ତୋ ବୋଉକୁ ବାଘୁଣୀ କରିଦବ ! ଉଠୁଚୁ ନା, ଦେଖିବୁ ଫେର୍ ? ସେ ତମ ଗାଁ ନଈ ନୁହଁ । ( କହି କହି ଭିତରକୁ ଚାଲିଗଲା । ଏଇ ସମୟରେ ବାହାରୁ ପ୍ରବେଶ କରିଚନ୍ତି ଗୁରୁଚରଣ )

ଗୁରୁଚରଣ—କଉଁ ନିତେଇ, କ'ଣ ସବୁବେଳେ ଘର ଭିତରେ ପଶିଚ ? ଟିକେ ବ ହାରକୁ ଯାଇ ବୁଲିଚାଲି କର ! ସବୁବେଳେ ଇମିତି ମନ ଖରାପ କରି ବସିଲେ ଲୋକେ କ'ଣ କହିବେ ?

ନିତ୍ୟାନନ୍ଦ—ଲୋକ କ'ଣ କହିବେ ? ସେଇ ଲୋକଙ୍କ କଥାରୁ ତ ନିଜ ଗାଁ ଛାଡ଼ିଲି ! ସମସ୍ତେ ପଚାରିଲେ, ପୁଅ କାହିଁକି ଜେଲ୍ ଗଲା ? ବୋହୂ କୁଆଡ଼େ ପାଗଳ ହୋଇ ଚାଲିଗଲା ? ସେଇ କଥାର ଜବାବ ଦେଇ-ପାରିଲିନି ବୋଲି ତ ଏଠିକି ଚାଲିଆସିଲି । ହେଲେ ଏଠି ବା ମୋ ପାଇଁ କୋଉ ନୂଆ ଜାଗା ? ଏଠି ଯିମିତି ବାହାରକୁ ଯିବି···ଲୋକେ ମତେ ପଚାରିବେ···!

ଗୁରୁଚରଣ— ପଢ଼ୁଥିବେ ? କ'ଣ ପଢ଼ୁଥିବେ ? ସତ କହ, କି ମିଛ କହୁ, କାହା ନାଁରେ ମାଲି ମକଦ୍ଦମା ନ ହେଉଛି ଯେ ? ତମ ପୃଥିର ତ ବସ୍ତୁର ସଗଠନ ; ମକଦ୍ଦମା ଚାଲିଛି । ହୁଏତ ନର୍ଦ୍ଦେଶରେ ଖଲାସ ବି ହୋଇପାରେ । ଆଉ ବୋହୂ ! କଉ, ଆଜିକାଲି ତ ଝିଅମାନେ କୋଉ କୋଉ ମୁଲକରେ ଚାକିରି କରି ବାପମା'ଙ୍କୁ ପୋଷୁଛନ୍ତି । ଆମ ବୋହୂ ଏବେ ପାଠ ପଢ଼ିଥିଲେ ବୋଲି ଚାକିରି କରି ଘର ଚଳଉଛି । ତୁମକୁ ଭିକ ମାଗିବାକୁ ତ ପଡ଼ୁନି ! ସେତିକି ଆମର ଗୌରବ ! ହଁ, ତୁମେ ଚାଲ, ବାହାରେ ଟିକିଏ ବୁଲି-ଆସିବ । ଆହେ, ଗାଁଟା ସାରା ମତେ ପଚାରୁଛନ୍ତି, ତମ ସାଙ୍ଗ ଆସିଛନ୍ତି, କାହାନ୍ତି ? ହଉ, ହଉ, ଯାଅ । ତମ ପଶାଖେଳର ସାଙ୍ଗମାନେ ଖୋଜୁଛନ୍ତି । ( ନିତ୍ୟାନନ୍ଦ ଚାଲିଗଲେ । କନକକୁ ଡାକିଲେ ) କନକ, କନକ ! ଆଇଲୁ ଇଆଡ଼େ ।

କନକ—( ଭିତରୁ ) ଖଟଟା ଗାଳିଦେଇ ଯାଉଛି; ମଉସା ! ( ଭିତରୁ ବାବୁଲିର କାନ୍ଦ ଶୁଭିଲା ) ବାବୁଲି, ବାବୁଲି ! କ'ଣ ହେଲା କିରେ ?

ବାବୁଲି—( ପ୍ରବେଶ କରି ) ମୋ ଜେଜେ କୁଆଡ଼େ ଗଲେ ? ( କାନ୍ଦକାନ୍ଦ )

ଗୁରୁଚରଣ—ତୋ ଜେଜେ ଗାଁ ବୁଲି ଯାଇଛନ୍ତି ; ଏଇନେ ଆସିବେ ।

ବାବୁଲି—ନାହିଁ, ନାହିଁ, ମୋ ଜେଜେ ପଳେଇଗଲେ । ମୁଁ ଯିବି, ମୁଁ ଯିବି ।

କନକ—ବାବୁଲି···

ଗୁରୁଚରଣ—( କାଖେଇ ), ହଉ, ହଉ, ଯିବୁ, କାନ୍ଦ ନା !



## ତୃତୀୟ ଦୃଶ୍ୟ

[ ଜୟନ୍ତଙ୍କ Drawing Room. ଲଗ୍ନା ରୋଗକ୍ଳିଷ୍ଟା, ଉଦାସ, ମଳିନ, ମୁଣ୍ଡ ନୁଖୁରା, ଦେହରେ ଅବିନ୍ୟସ୍ତ ବେଶ, ଉପରେ ଗୋଟିଏ ଶାଲ୍ ଘେରେଇ ହୋଇ ଭିତରୁ ଆସିଲେ । ପଛେ ପଛେ ଆସିଚନ୍ତି ଜୟନ୍ତ ]

ଲଗ୍ନା—ନା, ମୁଁ ମନା କରୁଚି, ଏତେ ଔଷଧ ମୁଁ ଖାଇବିନି । ତୁମେ ମତେ ବିରକ୍ତ କରନି । ( ଟଳି ଟଳି ଯାଇ ସୋଫାକୁ ଆଶ୍ରୟ କରି ବସିପଡ଼ନ୍ତି )

ଜୟନ୍ତ—ଔଷଧ ଖାଇବନି, ଫଳ ଖାଇବନି ନ ଖାଇଲେ ଦେହ ଭଲ ହେବ କିମିତି ?

ଲଗ୍ନା—ମୋର ଭଲ ହେବା ଦରକାର ନାହିଁ ।

ଜୟନ୍ତ—କିନ୍ତୁ ଡାକ୍ତର କହୁଚନ୍ତି, ଏସବୁ ତୁମକୁ ଖାଇବାକୁ ପଡ଼ିବ ।

ଲଗ୍ନା—ଡାକ୍ତରଙ୍କ ଆସିବା ଦରକାର ନାହିଁ କି ତୁମର ଟଙ୍କା ଶ୍ରାଦ୍ଧ କରିବା ଦରକାର ନାହିଁ ।

ଜୟନ୍ତ—କିନ୍ତୁ, କେତେଦିନ ତୁମେ ଇମିତି ଦୁର୍ବଳ ଦେହ ନେଇ ବସି ରହିବ, କହିଲ ?

ଲଗ୍ନା—ଓ, ତୁମ business ମାଟି ହେଇଯାଉଚି ପରା !

ଜୟନ୍ତ—ହଁ, ଦଶଦିନ ହେଲା ସୁଟିଂ ବନ୍ଦ । ଗୁହଳିଆଗଞ୍ଜ ଡାକବଙ୍ଗଳାରେ technicianମାନେ ବସିରହିଚନ୍ତି ।

ଲଗ୍ନା—ଆଉ ପ୍ରଡ୍ୟୁସର, ଫାଇନାନ୍ସିଆରମାନେ ବି ଖୁବ୍ ବିରକ୍ତ ହଉଥିବେ ?

ଜୟନ୍ତ—ଲଗ୍ନା, this is no joke ! ଠିକ୍ ଅଛୁ, ତୁମ ଇଚ୍ଛା ଯାହା, ସେଇୟା କର । ( କହି ଚାଲିଗଲେ )

( ଲଗ୍ନା ଯାଇ ରକିଂ ଚେୟାର ଉପରେ ବସି ଝୁଲିବାକୁ ଆରମ୍ଭ କରିଚି )

ଲଗ୍ନା—ହଁ, ମୋର ଯାହା ଇଚ୍ଛା, ମୁଁ କରିବି । ଚକ୍କର କର ତୁମେ, ଚକ୍କର କରନ୍ତୁ ତୁମ ଡାକ୍ତର, ଚକ୍କର କରନ୍ତୁ ତୁମ financier ! ତୁମମାନଙ୍କୁ ଇମିତି ହଇରାଣ କରିବାରେ ମଞ୍ଜୁର ଆନନ୍ଦ ଅଛି···। ( ରକିଂ ଚେୟାର ଉପରେ ବସି ଆକ୍ଷେପ କଲାଭଳି ହସିଉଠିଲେ )

( ଏତିକିବେଳେ ପ୍ରବେଶ କଲେ ସେଠଜୀ )

ସେଠଜୀ—ନମସ୍ତେ ଲଗ୍ନା ଜୀ, ନମସ୍ତେ ! ଆରେ, ଆପ୍ କା ତବିୟତ୍ ତ ବହୁତ ଅଚ୍ଛା ହୈ !

ଲଗ୍ନା—ହଁ, ଅଛି ।

ସେଠଜୀ --ଲେକିନ୍ doctrorନେ କହା, ଆପ୍‌କୋ ପନ୍ଦର ଦିନ rest ଲେଣା ଚାହିଏ ?

ଲଗ୍ନା କଣ, ଆପଣମାନେ rest ଦେଲେ ତ ?

ସେଠଜୀ—ଆରେ, ଜରୁର ଜରୁର ! Rest ଲେଣା ହୈ ତ ୟହ ହାଁ କ୍ୟୁଁ ? ଅଗର ଚାହେ ତୋ ଦାର୍ଜିଲିଂ, ସିମଲା, ନୈନିତାଲ କାଶ୍ମୀର ଯାଇଏ । । ଜ ଚାହାତା ହୈ, ଚଲିୟେ ନା । ଥୋଡ଼ା ଦିନ ଆରାମ କର୍ କେ ଚଲେ ଆୟେଙ୍ଗେ !

ଲଗ୍ନା—Many thanks !

ସେଠଜୀ—ତୋ ମୈ ଇନ୍ତେଜାମ୍ କରୁଁ ?

ଲଗ୍ନା—ଜଜାୟେ, କଣ୍ଠ ଆପଣଙ୍କୁ ଏତେଟା ତକଲିଫ୍···।

ସେଠଜୀ—ତକଲିଫ୍ ? ଆପ୍‌କା ସେବା ! ଔର ଇସିମେ ତକଲିଫ ! ତୋ ସମ୍ଝାଲେ ମୁସିବତ୍ । ( ସେଠ ଚାଲିଗଲେ ଓ ପୁଣି ଫେରି ) Plane ticketକା ଇନ୍ତେଜାମ କରୁଁ ? ( କହି ପ୍ରସ୍ଥାନ )

ଲଗ୍ନା—ଦାର୍ଜିଲିଂ, ସିମଲା, ନୈନିତାଲ, କାଶ୍ମୀର ! No, ସୁଇଜରଲଣ୍ଡ; ଯାହା ଜୀ ଚାହାତା ହୈ···( ହସିଉଠିତ ) ( ପଶିଆସିଲେ ଶୁଭେନ୍ଦୁ )

ଶୁଭେନ୍ଦୁ—( କୁକୁରର catalogue ଧରି ) ଆଜି ଦେଖୁଚି ଆପଣ correct moodରେ ଅଛନ୍ତି । ଏତିକିବେଳେ catalogue ଦେଖି choose କରିଦେଲେ ଗୋଟେ କାମ ସରିଯିବ ।

ଲଗ୍ନା—Catalogue ?

ଶୁଭେନ୍ଦୁ—ହଁ, କୁକୁର । ( କ୍ୟାଟଲଗରୁ ଗୋଟେ କୁକୁରର ଛବିକୁ ନିର୍ଦ୍ଦେଶ କରି ) ମୋ ସାଥିରେ ଆପଣଙ୍କ choice ବିଶେଷ differ କରିବନି । ତଥାପି ଦେଖନ୍ତୁ ଆପଣ । Pure breed କୁକୁର, ସ୍ପେନିଆଲ । କାନ ଦୁ'ଟା କେତେ ଡିଗ୍ରୀ ଆଙ୍ଗଲ କରି ତଳକୁ ଝୁଲୁଚି, ଦେଖୁଚନ୍ତି ତ ? ଆଉ family tradition । ସ୍ୟା'ର ଅଜା ବ୍ରିଗେଡ଼ିଅର ଜନ ସ୍ମିଥଙ୍କ ସାଙ୍ଗରେ first world warରେ ଇଂଲଣ୍ଡରୁ ଭରତ୍ ଆସିଥିଲା । ସ୍ୟା'ର ବାପା ପାଦ୍ରୀ ମ୍ୟାକେଞ୍ଜି ସାହେବଙ୍କ ସାଥିରେ ଆସିଥିଲା କଲିକତାକୁ । ତା' ମା ଆଇର୍ଲଣ୍ଡର ଆମ୍ବାସାଡ଼ରଙ୍କ ଘରେ । ଅବଶ୍ୟ accidentରେ ତା'ର ଗୋଟେ ଗୋଡ଼ ଟ୍ରେଟା ହୋଇଯାଇଚି । ସ୍ୟାର ବଡ଼ବାପା ଅଛି ପାକିସ୍ଥାନରେ ସାର ଜାଫ୍ରୁଲ୍ଲଙ୍କ ଘରେ, ଆଉ ସ୍ୟା'ର ଭାଇ ଅଛି ସୁଚେତା ସେନଙ୍କ ଘରେ ଏବଂ ଭଉଣୀ ଅଛି ଆଶା ପରେଖଙ୍କ ଘରେ । ଏଇଥିରୁ ବୁଝିପାରୁଥିବେ ଆପଣଙ୍କ ପାଇଁ କ'ଣ choose କରାଯାଇଚି ! ଖାଲି ହଁ କହିଲେ ମୁଁ order book କରିବି ।

ଲଗ୍ନା—ହଁ, order ଦିଅନ୍ତୁ ।

ଶୁଭେନ୍ଦୁ—Advance ତ ଦେଇସାରିଛି । Order ଦେବା ଗୋଟେ ମିନିଟ୍ । ମୁଁ ଜାଣେ, ଆପଣଙ୍କର ଆଉ ମୋର choice ମୋଟେ differ କରିବନି । ଆଚ୍ଛା, ମୁଁ ଯା'ହେଲେ ଆସୁଚି ?

( ଶୁଭେନ୍ଦୁ ଚାଲିଗଲେ : ଅସିତ ରଚନା )

ଲଗ୍ନା—କୁକୁର ମୋର ଦରକାର । କୁକୁର, ସ୍ପେନିଆଲ୍...ହାଃ, ହାଃ, ହାଃ... ( ତା'ପରେ ଧୀରେ ଧୀରେ ଉଠି କଣ୍ଢେଲ ପାଖକୁ ଗଲା ) ଆରେ, ତୋର ଅନ୍ଧକାରର ପୂରବୀ

କୁକୁର ଦରକାର ? ହଁ, ତୋ ପାଇଁ ମୁଁ କୁକୁର ଆଣିଦେବ । ସୁନ୍ଦର କୁକୁର···ଦେହସାରା ଧଳା ହୋଇଥିବ···ମୁଣ୍ଡରେ ଗୋଟିଏ କଳା ଟିପା ଥିବ···ତୁ ତାକୁ ଧରି ଖେଳିବୁ । ଦେଖିଲୁ, ଦେଖିଲୁ, କୋଉଟା ତୋର ପସନ୍ଦ ହଉଚ ? ଆରେ, ତୁ କାନ୍ଦୁଚୁ କି? ନା, ନା, ତୁ କାନ୍ଦ୍ ନା ! ରତନା, ରତନା !

( ରତନା ବାହାରୁ ଆସୁଥିଲା । ହଠାତ୍ ରହିଯାଇଚ । ପରେ ପାଖକୁ ଲାଗିଆସି )

ରତନା—ଦେଈ ! ଦେଈ !

ଲଗ୍ନା—ଏଁ, କଏ, ରତନା !

ରତନା—ଅନାମ ବାବୁ ଆସିଲେ ନାହିଁ, ଦେଈ !

ଲଗ୍ନା—ଆସିଲେନ ? ମୋ ଦେହ ଭଲ ନାହିଁ ବୋଲି ତୁ କହିଥିଲୁ ?

ରତନା—ହଁ, କହିଥିଲି । ଆହୁରି ବି କହିଥିଲି, ଦେଈ ମୋର ନ ଖାଇ ନ ପିଇ ତମ ପାଇଁ ଅନେଇ ବସିଚନ୍ତି ।

ଲଗ୍ନା—ତେବେ ବି···ଆଚ୍ଛା, ଆଉ କିଛି କହୁଥିଲେ ?

ରତନା—ହଁ, ଦେଈ ! କହିଲେ, ତମେ ଦେହର ଅବହେଳା କରିବ ନାହିଁ । ଠିକ୍ ସମୟରେ ଔଷଧ, ପଥ୍ୟ ଖାଇବ । ମୋ ହାତରେ ସିଏ ଅମରେଶ୍ୱରଙ୍କ ପ୍ରସାଦ ଦେଇ କହିଲେ, "ଏତା ଦେଈଙ୍କ ତୁଣ୍ଡରେ ପ୍ରସାଦ ଦେଇଦବୁ, ରତନା ! ମୁଁ ତାଙ୍କ ପାଇଁ ଠାକୁରଙ୍କ ପାଖେ ମାନସିକ କରିଚ ।"

ଲଗ୍ନା—( ହସି ) କାହିଁକି ଠାକୁରଙ୍କ ପ୍ରସାଦ ଦେଇଚ ? କାହିଁକି ସେ ମୋ ପାଇଁ ଠାକୁରଙ୍କ ପାଖେ ମାନସିକ କରିବ ? ମୋ ଦେହ ଭଲ ନ ହେଲେ, ତା'ର କଣ କ୍ଷତି ? ନେଇ ଯା' ସେ ପ୍ରସାଦ !

ରତନା—ଦେଈ, ଦିଅଙ୍କ ପ୍ରସାଦ !

ଲଗ୍ନା—ନା, ନା, ମୋ ପାଇଁ ଠାକୁର, ଦିଅଁ, ଦେବତା କିଛି ନାହିଁ; ଭେଦ ନାହିଁ । ହାଃ, ହାଃ, ହାଃ !

( ହସୁଥିବାବେଳେ ମଞ୍ଚ ଅନ୍ଧକାର ହେଲା )



## ତୃତୀୟ ଦୃଶ୍ୟ

[ ଶୁଭେନ୍ଦୁଙ୍କ ଘରର ବାହାର । ଅନାମ ଛୁଡ଼ା ହୋଇଥିଲା । ଭିତରୁ pipe ମୁହଁରେ ଆସିଚନ୍ତି ଶୁଭେନ୍ଦୁ ]

ଶୁଭେନ୍ଦୁ—ଆସ, ଅନାମବାବୁ, ଭିତରକୁ ଆସ !

ଅନାମ—ଆଜ୍ଞା, ଏଇଟା ମୋର କାମର ବେଳ । ଖାଲି ଜରୁରୀ କାମରେ ଆପଣ ଡକେଇଚନ୍ତି ବୋଲି ଆସିଲି । ଡେରି ହେଲେ ତେଣେ ମାଲିକ ରାଗିବେ ।

ଶୁଭେନ୍ଦୁ—ମାଲିକ ରାଗିବେ ? କ'ଣ ଚାକିରି ଚାଲିଯିବ ବୋଲି ଡରୁଚ, ଅନାମବାବୁ ? ( ହସିଲେ )

ଅନାମ—ଆଜ୍ଞା, ହଁ !

ଶୁଭେନ୍ଦୁ—( ଅନାମର ପିଠିରେ ହାତ ମାରି ) ଚାକିରି ଚାଲିଗଲେ ତମ ଭଳି ପିଲାଙ୍କୁ କ'ଣ ଆଉ ଚାକିରି ମିଳିବ ନାହିଁ ବୋଲି ଭାବୁଚ ? ମୁଁ ଚାହିଁଲେ ତମକୁ ଇମିତି ଦଶଟା ଚାକିରି ଯୋଗାଡ଼ କରିଦେଇପାରେ । ହଁ, ଦରମା କେତେ ?

ଅନାମ—ଶହେକୋଡ଼ିଏ···

ଶୁଭେନ୍ଦୁ—ଶହେକୋଡ଼ିଏ ! ହାଃ, ହାଃ, ତମେ ଜାଣିଚ, କାଲି ମୁଁ ଲଜ୍ଜାଦେବୀଙ୍କ କୁକୁରର ହେପାଜତ ନବାପାଇଁ ଜଣକୁ appoint କରିଚି, ଦରମା ଦେଢ଼ଶହ ଟଙ୍କା···ହାଃ, ହାଃ !.

ଅନାମ—କାହିଁକି ଡକେଇଥିଲେ, ଆଜ୍ଞା ? ( ଶୁଭେନ୍ଦୁଙ୍କ ହସ ବନ୍ଦ ହୋଇଗଲା । )

ଶୁଭେନ୍ଦୁ—ହଁ, କାହିଁକି ଡକେଇଥିଲି ? ( ଟିକଏ ରହି ) ଡକେଇଥିଲି ଇମିତି ଗୋଟେ ପରାମର୍ଶ ପାଇଁ ।

ଅନାମ—ପରାମର୍ଶ ? ମୋ ସାଙ୍ଗରେ···

ଶୁଭେନ୍ଦୁ—ହଁ, ତମେ ଯୋଉ business ରେ ଅଛ, ସେଇ ସଂକ୍ରାନ୍ତରେ··

ଅନାମ—ମାନେ, କାଠ ?

ଶୁଭେନ୍ଦୁ—ହଁ, କାଠ···ମୋର କିଛି କାଠ ଦରକାର । ଭାବିଲି, ତମକୁ ପଚାରି କିଣିଲେ ଭଲ ହବ । ଅନ୍ତତଃ ଠକାମିରେ ପଡ଼ିବ ନାହିଁ ।

ଅନାମ—ଅଜ୍ଞା, କାଠ କାରବାର ନେଇ ମତେ କିଛି ଜଣା ନାହିଁ । ମାଲିକ ନିଜେ ସେସବୁ ବୁଝନ୍ତି । ଆଉ ମୁଁ ଖାଲି ଖାତାପତ୍ର ଲେଖେ ।

ଶୁଭେନ୍ଦୁ—ହେଲେ ବି ତୁମର କାଠ ବିଷୟରେ ଗୋଟେ ସାଧାରଣ ଅଇଡ଼ିଆ ତ ଥିବ ?

ଅନାମ—ଅଜ୍ଞା, ଆପଣଙ୍କର କ'ଣ ଦରକାର, କୁହନ୍ତୁ ?

ଶୁଭେନ୍ଦୁ—କାଠ ବିଷୟରେ ମୋର କିଛି ଧାରଣା ନାହିଁ । ବରଂ ତୁମେ କୁହ, furniture ପାଇଁ, I mean, sofa, tea poy, dressing table ପାଇଁ କୋଉ କୋଉ କାଠ ଭଲ ହବ ?

ଅନାମ—Furnirure ପାଇଁ ଶାଗୁଆ କାଠ ଦରକାର ।

ଶୁଭେନ୍ଦୁ—କାହିଁକି, ordinary କାଠ ଦେଇ manage କରିଦେଲେ ଚଳିବନି ?

ଅନାମ—ଆଜ୍ଞା, furniture ହେଲା ଦାମିକା ଜିନିଷ; drawing roomରେ ରହିବ । Ordinary କାଠରେ ହେଲେ କିମିତି ଚଳିବ ? ଯୋଉଠିକି ଯାହା ମାନିବ ନା !

ଶୁଭେନ୍ଦୁ—ତା' ହେଲେ ତମେ ବି ଏକଥା ବିଶ୍ୱାସ କର··· ?

ଅନାମ—କୋଉ କଥା, ଆଜ୍ଞା ?

ଶୁଭେନ୍ଦୁ—ଯୋଉଠିକି ଯାହା ମାନବ…

ଅନାମ—କିଛି ବୁଝି ପାରିଲିନି, ଆଜ୍ଞା !

ଶୁଭେନ୍ଦୁ— ସବୁ ବୁଝି ତମେ ଯଦି ନ ବୁଝିବାର ଛଳନା କର…

ଅନାମ— ଆପଣ · ମନେ…

ଶୁଭେନ୍ଦୁ—ଅନାମବାବୁ, ତମେ ଜାଣିଚ, ଶାଳ, ପିଅଶାଳ ଆଉ କୁରୁମ କାଠ ଭିତରେ ତଫାତ୍‌ଟା କ'ଣ ? ତଥାପି ସବୁ ଜାଣିଶୁଣି ତମେ କୁରୁମ କାଠକୁ ପିଅଶାଳ ଦାମରେ ବିକିବାର ଚେଷ୍ଟା କରୁନ କାହିଁକି ? ଖବୁଚ, ଉପରେ ପାଲିସ୍ କରି ରଙ୍ଗ ବୋଳିଦେଲେ କେହି ବାରିପାରିବେ ନାହିଁ ?

ଅନାମ—ଅଜ୍ଞା, ମିଛରେ ମନେ ଭୁଲ ବୁଝୁଚନ୍ତି ଆପଣ ।

ଶୁଭେନ୍ଦୁ—ଚୁପ୍ କର ! ମିଛରେ ? ସ୍କାଉଣ୍ଡ୍ରେଲ ଦରକାର…ଆସ, ମୁଁ ତୁମକୁ ଦେବି । ଟଙ୍କା ଦରକାର…ମୁଁ ତୁମକୁ ଦେବ । କିନ୍ତୁ ଇମିତି ଆମ ଦୋକାନରେ ଧୂଳି ଦବାର ଚେଷ୍ଟା ତମେ କର ନାହିଁ । ଆଉ ଯଦି ଦେଖି କିଦ୍ ଧରି ସେଠି ଥିବ, ତେବେ ଫଳ କିଛି ଭଲହେବ ନାହିଁ । ( ଅନାମ ଚାଲିଗଲେ । ଶୁଭେନ୍ଦୁ ଚାଲିପଡ଼ି ଦେଖିଲେ, ଅନାମ ଚାଲିଯାଇଚ ଓ ସେଠି ଛିଡ଼ା ହୋଇଚନ୍ତି ଅଦ୍ୱୈତ ) ଆରେ, ଅଦ୍ୱୈତ ବାବୁ ଯେ !

ଅଦ୍ୱୈତ—ନମସ୍କାର ! ଆଜି କ'ଣ ଖବର ? ମନେହଉଚ ବେଶ୍ moodରେ ଅଛନ୍ତି ।

ଶୁଭେନ୍ଦୁ—ହଁ, ଆଉ ମୋ କଥା କମିତି ମନେପଡ଼ିଲା ?

ଅଦ୍ୱୈତ—ପଡ଼ିବ ନାହିଁ, ଅଜ୍ଞା ? ନିଶ୍ଚୟ ପଡ଼ିବ । ଗତବର୍ଷ ଠିକ୍ ଏଇଦିନ ଆପଣଙ୍କର ମୋ ସଙ୍ଗେ ପରିଚୟ…!

ଶୁଭେନ୍ଦୁ—ଏଇଦିନ ?

ଅଦ୍ୱୈତ –ଏଇ ଦେଖନ୍ତୁ ନିମନ୍ତ୍ରଣ !

ଶୁଭେନ୍ଦୁ—ନମସ୍କାର ! ଜାହ୍ନାର ?

ଅଦ୍ୱୈତ—କାହିଁକି, ଲଗ୍ନା ଦେବୀଙ୍କର ! 18th Birth dayର ନମସ୍କାର ଲଗ୍ନା ଦେବୀଙ୍କର···ସ୍ୱତରେ ପୁଣି ଅଠର ବୃଲିଲା !

ଶୁଭେନ୍ଦୁ—ମୁଁ ଆଉ ଲଗ୍ନା ଦେବୀଙ୍କର Birth day ଖବର ରଖିନି !

ଅଦ୍ୱୈତ—କାହିଁକି, ଆଜ୍ଞା ? କ'ଣ ହେଲାକି ? ଉଃ! ବାଦଲ କ'ଣ ମୌସୁମୀ ହାଓ୍ୱାରେ ପର୍ଦ୍ଦା ପର୍ଦ୍ଦା ଆପଣଙ୍କ ଆଖିଆଗରେ ଛପି ବୁଲିଗଲା ? ଟୋପେ ଦୁ'ଟୋପା ବି ବରଷିଦେଇ ଗଲାନି ?

ଶୁଭେନ୍ଦୁ—କ'ଣ ଛବିଚନ୍ଦ୍ର ? ମୁଁ କ'ଣ ଚାତକ ପରି ସେଇ ଟୋପେ ଦୁ'ଟୋପାକୁ ଆଶା କରିଥିଲି ବୋଲି ଆପଣ ଭାବୁଚନ୍ତି ?

ଅଦ୍ୱୈତ—ନା, ନା, ଆପଣ କାହିଁକି ଟୋପେ ଦୁ'ଟୋପାକୁ ଆଶା କରିବେ ? ଆପଣଙ୍କ ମନ ଏତେ ଛୋଟ ନୁହେଁ । ମୁଁ ଜାଣିଚି, ଆପଣ ପୂରାପୂରି ଅସରାଏ ଆଶା କରିଥିଲେ । ହେଲେ କିଛି ମିଳିଲା ?

ଶୁଭେନ୍ଦୁ—ସେମିତି କିଛି ହେଇଥିଲେ ଆପଣ ନିଶ୍ଚୟ ଜାଣିଥାନ୍ତେ ।

ଅଦ୍ୱୈତ—ମିଳିନି ବୋଲି ମୁହଁ ଦେଖି ବୁଝିପାରୁଚି, ଆଜ୍ଞା ! ଏଇ ଚାର ସାମ୍ବାଦିକ ବୃତ୍ତିର ଭାତ ପେଟ ପଛେ ନ ପୂରୁ, କିନ୍ତୁ ମଣିଷର ମନ ନେଇ ଗାଢ଼ମତ ଗୋଟାଏ ଛପାଚୋପା ଲେଖିବା ଭଳି ଅଭିଜ୍ଞତା ହେଲାଣି ।

ଶୁଭେନ୍ଦୁ—ତା' ହେଲେ ଆପଣ ମତେ ଦେଖି ଜାଣିପାରୁଥିବେ, ମୁଁ କି ପରିସ୍ଥିତିରେ ପଡ଼ିଚି !

ଅଦ୍ୱୈତ—ନିଶ୍ଚୟ, ନିଶ୍ଚୟ, କିଛି ସାଂଘାତିକ ··

ଶୁଭେନ୍ଦୁ—ଖାଲି ସାଂଘାତିକ ନୁହେଁ, ମାରାତ୍ମକ ମଧ୍ୟ ।

ଅଦ୍ୱୈତ—ଆଜ୍ଞା, ଯେତେ ମାରାତ୍ମକ ହେଲେ ବି ଆପଣଙ୍କୁ ବଳେଇଯିବା କଥା ନୁହେଁ !

ଶୁଭେନ୍ଦୁ—ନା, ବଳେଇ ଯିବ ନାହିଁ । ମୁଁ ତା'ର ବ୍ୟବସ୍ଥା କରୁଚି । କିନ୍ତୁ କଥାଟା ଆପଣଙ୍କୁ ଲୁଚେଇ ରଖିବାକୁ ପଡ଼ିବ ।

ଅଦ୍ୱୈତ – ଅଙ୍କ୍ଷା, ଲୁଚେଇ ରଖିବାକୁ କ'ଣ କହୁଚନ୍ତି ? ବିଲ୍‌କୁଲ୍ ଦବେଇଦବା କଥା କୁହନ୍ତୁ ନା !

ଶୁଭେନ୍ଦୁ—ପାରିବେ ତ !

ଅଦ୍ୱୈତ—ମୋ ପାରିଲାପଣିଆ କ'ଣ ଆପଣଙ୍କୁ ଅଛପା ଅଛି ! କେତେ କେତେ ବଡ଼ ଖବର ଇମିତି ଦବେଇଦେଇଚି । ଆଉ କେତେ ଗ୍ରେଟ୍ ଗ୍ରେଟ୍ ଖବରକୁ ବଡ଼ କରି ଯୋଇଦେଇଚି । ଆପଣଙ୍କର ଏଇଟା ଗ୍ରେଟିଆ କଥା ଯେ...

ଶୁଭେନ୍ଦୁ—ଗ୍ରେଟ୍ କଥା ନୁହେଁ; ଗୋଟାଏ Planned truck accident.

ଅଦ୍ୱୈତ—କ'ଣ କହିଲେ ? Planned truck accident ର ବ୍ୟବସ୍ଥା କରାଯାଇଚି ? Planned truck accident ? ଆଜିକାଲି ଯୋଗାଡ଼ କରି ଇମିତି accident କରାଯାଇ ପାରୁଚି ? ହେ ପ୍ରଭୁ, Lord Jagannath ! ଯେତେ ଲୋକଙ୍କ ନାଁରେ ମିଛସତ ଯୋଡ଼ି ଲେଖିବାକୁ ପଡ଼ୁଚି, ଏ ଜୀବନଟା କେତେବେଳେ ଇମିତି ଯୋଗାଡ଼ ଭିତରେ National High Way ଉପରେ ଚେପା ହେଇ ମିଶିଯିବ, କିଏ କହିବ ?

ଶୁଭେନ୍ଦୁ—ଆପଣଙ୍କର କେବେ କିଛି ହବ ନାହିଁ; ଆପଣ ନିଶ୍ଚିନ୍ତ ଥାନ୍ତୁ । ସମସ୍ତଙ୍କର ପାଟି ମୁଁ ଗୋଟି ଗୋଟିକରି ବନ୍ଦକରିବାର ବ୍ୟବସ୍ଥା କରିବି ।

ଅଦ୍ୱୈତ—ଆପଣ କାହିଁକି ଦୌଡ଼ାଦୌଡ଼ି କରିବେ ? ଆପଣ ବସନ୍ତୁ, ସେ ସବୁ ବ୍ୟବସ୍ଥା ମୁଁ କରିବି । ଆପଣଙ୍କ ଗୋଡ଼ରେ ଧୂଳି ଲାଗିବା କିଛି ଦରକାର ନାହିଁ ।

ଶୁଭେନ୍ଦୁ—ଶୁଣନ୍ତୁ, ଆପଣ କିଛି ନେଇଯାନ୍ତୁ । ଟଙ୍କା ଦେଇ ଶୁଭେନ୍ଦୁ, ଚାଲିଗଲା । ଅଦ୍ୱୈତ ଟଙ୍କାସବୁ ଗଣିଲାବେଳକୁ ବାହାରୁ ଆସିଲେ ସୁଜାତ.

ସୁଶୀଳ—ଦଶ ନୁହେଁ, କୋଡ଼ିଏ ନୁହେଁ, ତିରିଶି ନୁହେଁ, ଏକାଥରକେ ଏତେଗୁଡ଼ାଏ ଟଙ୍କା ! ହାଃ, ହାଃ, ହାଃ··· ( ପାଗଳ ସୁଶୀଳଙ୍କ କଥା ଶୁଣି ଅଦ୍ୱୈତ ଅଣ ଅଣ ଟଙ୍କାଗୁଡ଼ାକ ପକେଟରେ ରଖିଦେଲେ । ତା ପରେ ଦେଖିଲେ, ସୁଶୀଳବାବୁ ଯୋଉ ଚିରା କାଗଜର ଟଙ୍କା ତଳେ ପକେଇ ଦେଇଥିଲେ, ତାକୁ ଟୋଳି ନେଇ ପକେଟରେ ରଖିଲେ । )

ଅଦ୍ୱୈତ—ଆରେ ସୁଶୀଳବାବୁ ଯେ ! ନମସ୍କାର

ସୁଶୀଳ—ଆପଣ ଜାଣିଚନ୍ତି, ମୁଁ କୋଡ଼ିଏ ହଜାର ଟଙ୍କା ପାଇଚି ? ମୋ ବହି "ଅଶ୍ରୁପୂର୍ଣ୍ଣ" ହିନ୍ଦିରେ ଛବି ହଉଚି । Producer ଚମତ୍କାର ଲୋକ, ଏକ ଥରକେ ମତେ କୋଡ଼ିଏ ହଜାର ଟଙ୍କା ଗଣିଦେଲେ । ଦେଖୁନାହାନ୍ତି, ଦେଖନ୍ତୁ··· ( ଚିରା କାଗଜଗୁଡ଼ାକ ଦେଖେଇ ଏକ, ଦୁଇ ତିନି କରି ଗଣିବାକୁ ଆରମ୍ଭ କଲେ )

ଅଦ୍ୱୈତ—ଶୁଣିଥିଲି, ଲୋକଟା ପାଗଳ ହୋଇଯାଇଚି । ଆହା କେଡେ ବଡ଼ ଲେଖକ, ବିଚରା ପାଗଳ ହେଇ କି ଅବସ୍ଥା ହଉଚି !

ସୁଶୀଳ—କଣ କହୁଚ, ମୁଁ ପାଗଳ ହେଇଯାଇଚି ?

ଅଦ୍ୱୈତ—( ଡରିଯାଇ ) ନାହିଁ ଆଜ୍ଞା, କହୁଥି କଣ ?

ସୁଶୀଳ—ଜାଣିଚନ୍ତି, ଅଦ୍ୱୈତବାବୁ ? କୋଡ଼ିଏ ହଜାର ! ! ସେମାନେ ମତେ ଈର୍ଷା କରୁଚନ୍ତି । ଏକାଥରକେ କୋଡ଼ିଏ ହଜାର ଟଙ୍କା ପାଇଗଲି ବୋଲି ସେମାନଙ୍କର ମୋ ଉପରେ ଘୋର ଈର୍ଷା । ନା, ନା, ଏ ଟଙ୍କା ମୁଁ କାହାରିକି ଦେବିନି—କାହାରିକି ଦେବିନି···( ଚାଲିଯାଉଥିଲେ )

ଅଦ୍ୱୈତ—ସୁଶୀଳବାବୁ, ସୁଶୀଳବାବୁ ! କୁଆଡ଼େ ଆସିଥିଲେ ଆପଣ ?

ସୁଶୀଳ ( ଫେରି ) ଆସିଥିଲି ଆପଣଙ୍କୁ ନିମନ୍ତ୍ରଣ କରିବାକୁ ।

ଅଦ୍ୱୈତ—ନିମନ୍ତ୍ରଣ ! ! !

ସୁଜୀବ—ହଁ, ମୋ ଛବି "ଅଗ୍ନିପୁରୁଷ" ଆଜି release ହଉଚି । ଗୋଟି ଗୋଟି କରି ସମସ୍ତଙ୍କୁ ଡାକଚି; ଆପଣଙ୍କୁ ଡାକୁଚି, ଆସିବେ, ନିଶ୍ଚୟ ଆସିବେ ।

ଅଦ୍ୱୈତ—ଆସିବି, ଆଜ୍ଞା, ଆସିବି ।

ସୁଜୀବ—ଆପଣଙ୍କ କାଗଜରେ ଭଲକରି ଦି ଧାଡ଼ି ଲେଖିବେ । ହଉ, ମୁଁ ଯାଏଁ, ଆହୁରି କେତେ ଜାଗାକୁ ଯିବାକୁ ପଡ଼ିବ । ମୋ ଟଙ୍କା କିଏ ନେଲା ? ଆପଣ···( ଅଦ୍ୱୈତ ଚମକିଉଠିଲେ )

ଅଦ୍ୱୈତ—ଆଜ୍ଞା, ନା···ଆପଣଙ୍କ ଟଙ୍କା ଆପଣଙ୍କ ପକେଟରେ ଅଛି । ସୁଜୀବଙ୍କ ପକେଟକୁ ଦେଖେଇଦେଲେ । ସୁଜୀବ ବୁଝିଯାଇ )

ସୁଜୀବ—ହଁ, ହଁ, ଅଛି, ନେଇ ନେଇନାହାନ୍ତି । ସେ ଟଙ୍କା ମୁଁ କାହାରିକୁ ଦେବି ନାହିଁ । ( କହି କହି ବାହାରକୁ ଚାଲିଗଲେ । ତାଙ୍କୁ କେବଳ ଚାହିଁ ହୋଇ ରହିଥିଲେ ଅଦ୍ୱୈତ ।

ମଞ୍ଚ ଅନ୍ଧକାର ହେଲା



## ପଞ୍ଚମ ଦୃଶ୍ୟ

[ ଏକ ଗ୍ରେଟ କାଠପଟାଦିଆ ଘର । ଲଣ୍ଠନ ଜଳୁଚି । ଝରକାବାଟେ ବାହାରେ ଝଡ଼ବର୍ଷା ଦେଖାଯାଉଚି । ଅନାମ ଶୋଇଚି ଗୋଟାଏ ଖଟ ଉପରେ । ମୁଣ୍ଡରେ ଓ ଦେହରେ ବ୍ୟାଣ୍ଡେଜ୍ ଭିଡ଼ା ହୋଇଚି । ଲଗ୍ନା ଆସିଚି ଭିତରକୁ । ଦେହରେ ବର୍ଷାତି ]

ଅନାମ—କିଏ ? କିଏ ତମେ ?

ଲଗ୍ନା—( ମଥାରେ ହାତ ଦେଇ ) ତମର କଣ ହେଇଚି, ଅନାମ ?

ଅନାମ—ନା, କିଛି ହୋଇନି ।

ଲଗ୍ନା—ତମେ ଏଠି ଏମିତି ହୋଇ ପଡ଼ିଚ—ଅଥଚ କହୁଚ କ'ଣ ନା, କିଛି ହୋଇନି ? ମତେ ଟିକିଏ ଖବର ଦବାକୁ ତମ ମନ କହିଲା ନି ?

( ଦେହକୁ ବର୍ଷାତି କାଢ଼ି ଟେବୁଲ ଉପରେ ରଖୁଥିଲା )

ଅନାମ—ନା, ସତରେ ବେଶି କିଛି ହୋଇନି । କିନ୍ତୁ ତମେ ଏଇ ରାତିରେ ଏଠିକି କାହିଁକି ଆସିଲ ? ଏଇ ଝଡ଼ବର୍ଷା...

ଲଗ୍ନା—ଖାଲି କ'ଣ ସେତିକି ? ତମର ଏଇ ଗଳିରାସ୍ତାର ଅନ୍ଧାର ଆଉ ପାଣି କାଦୁଅ ଭିତରେ ମୁଁ ତମ ବସାଟା ଠିକ୍ ଖୋଜି ବାହାର କରିପାରିଚି ବୋଲି ମତେ ଧନ୍ୟବାଦ ଦବ ନାହିଁ ?

ଅନାମ—କିନ୍ତୁ...ଏତେ କଷ୍ଟ କରି କାହିଁକି ତୁମେ ଆସୁଥିଲ ?

ଲଗ୍ନା—କାହିଁକି ଆସିଲି ? ଏଇ, ତମରି ପାଇଁ । ତମେ ଯଦି ସହରର ରାସ୍ତାରେ ସାବଧାନରେ ବାଟ ଚାଲି ନ ଜାଣିବ ତା ହେଲେ କେତେଥର ଯେ ମତେ ଇମିତି ଆସିବାକୁ ପଡ଼ିବ, ତା'ର ଠିକଣା ନାହିଁ ।

ଅନାମ—ହଁ, ସତରେ ମୁଁ ଅସାବଧାନ ହୋଇଚି, ବାଟ ମୁଁ ଭୁଲିଚି । ହେଲେ ଆଉ ସେ ଭୁଲ ହବ ନାହିଁ—( କାନ୍ଦ କାନ୍ଦ ହୋଇ ଅନାମ କହିଲା )

ଲଗ୍ନା—କ'ଣ କହୁଚ ?

ଅନାମ—ହଁ, ସେଇଠି ମୋର ଚାଲିବାଟ ଶେଷ ହୋଇଯିବାର ଥିଲା । ସେଇଠୁ ମୋର ଫେରିଆସିବା ଉଚିତ ଥିଲା ।

ଲଗ୍ନା—କୋଉଠୁ ?

ଅନାମ—ରଞ୍ଜନା ପାଖରୁ ! ହେଲେ ମୁଁ ତ ଆଉ ଇଚ୍ଛା କରି ଭିତରକୁ ଯାଇନି ! ହଠାତ୍ ଜୟନ୍ତବାବୁ ଦେଖା ହୋଇଗଲେ; ତା'ପରେ ତମେ । ସେତେବେଳେ ମୁଁ ତ ଆଉ ଜାଣି ନ ଥିଲି...

ଲଗ୍ନା—କ'ଣ ଜାଣି ନ ଥିଲ ?

ଅନାମ– ଜାଣି ନ ଥିଲି, ସେଠିକି ଯାଇ ମୁଁ ତମର କ୍ଷତି କରୁଛି ।

ଲଗ୍ନା—ତମେ ମୋର କ୍ଷତି କରୁଛ ? ଏ କଥା ତୁମକୁ କିଏ କହିଲା ?

ଅନାମ—ଯୋଉମାନେ ସବୁ ସେଠିକି ଆସନ୍ତି, ସେଇ ବଡ଼ବଡ଼ ବାବୁମାନେ···

ଲଗ୍ନା—କିଏ କିଏ ସେମାନେ ? କ'ଣ ତୁମକୁ କହିଲେ ?

ଅନାମ—ଯାହା କହିଲେ, ଭୁଲ ତ କିଛି କହିନାହାନ୍ତି ! ତମର ସେଇ ଘର ଭିତରେ ମୋ ଭଳି ଜଣେ ଲୋକ ଠିଆ ହେଲେ ସତରେ ତମର ଅପମାନ ହୁଏ । ଜାଣୁ ଜାଣୁ ମୁଁ ତାହିଁକି···

ଲଗ୍ନା—ଓ, ବୁଝିଲି ; ଏ କଥା ତୁମକୁ କିଏ କହିଥିବ, ତା ବି ଜାଣିପାରିଲି । କିନ୍ତୁ ଏ ସବୁ କଥା ଶୁଣି ତମେ ମତେ ଭୁଲ ବୁଝିପାରିଲ, ଅନାମ ?

ଅନାମ—ତମର ଅପମାନ ହେବ, ଏ କଥା ମୁ ସହିପାରନ୍ତି କିମିତି ?

ଲଗ୍ନା—ଆଉ ସେଇଥିପାଇଁ ଆଜି ଏମିତି ଅସୁବିଧା ଭିତରେ ବି ମୋ କଥା ତୁମର ମନେ ପଡ଼ିଲାନି, ନା ?

ଅନାମ—( ନୀରବ )

ଲଗ୍ନା—ଦିହପା' ଖରାପ ହେଲେ ମଣିଷ କାଳର ଲୋକକୁ ପାଖରେ ଖୋଜେ; ଖୋଜେ ଟିକିଏ ଆଶ୍ରା, ଆଶ୍ୱାସନା, ସେବା, ଶୁଶ୍ରୂଷା, ସ୍ନେହ, ମମତା— ଯାହାକୁ ନେଇ ମଣିଷ ଦୁଃଖ ଆଘାତ ଭୁଲେ । ତୁମେ କିନ୍ତୁ ଖୋଜିଚ ଏଇ ତୁଳା ବ୍ୟାଣ୍ଡେଜ, ଔଷଧ, ଇଞ୍ଜେକ୍‌ସନ ଭିତରେ ସବୁ କିଛି ଭୁଲିଯିବାକୁ ।

ଅନାମ—ନା, ମୁଁ ବି ଖୋଜୁଁଚ, ପାଖରେ କେହି ଜଣେ ଥାନ୍ତା, ତା'ର ପଦେ କଥା, ଟିକିଏ ଆହା'ରେ ମୋର ସବୁ ଦୁଃଖ ଭୁଲେଇଦିଅନ୍ତା । ହେଲେ ମୁଁ କାହାରିକି ଡାକିନି ; କାହାରିକି ଖୋଜିନି । ଇଚ୍ଛା କରି ତାହାରିକୁ ଖବର ଦେଇନି ।

ଲଗ୍ନା—କିନ୍ତୁ କାହିଁକି ? କୁହ, କାହିଁକି ? କ'ଣ ପାଇଁ, କୁହ···

ଅନାମ—( ତକିଆ ତଳେ ଥିବା ନୋଟବଣ୍ଡଲ୍ ବାହାରି ଲଗ୍ନାକୁ ଦେଖେଇ ) ଏଇଥିପାଇଁ ! ( ଟଙ୍କା ଦେଖି ଚମକି ଉଠିଛି ଲଗ୍ନା )

ଲଗ୍ନା—ଟଙ୍କା ? ଏତେ ଗୁଡ଼ାଏ ଟଙ୍କା ତୁମେ କୋଉଠୁ ପାଇଲ ?

ଅନାମ—ସେମାନେ ମତେ ଦେଲେ, ଆଉ କହିଲେ, ଯଦି ଏଇ accident କଥା କାହାକୁ କହେଁ, ତା' ହେଲେ ମତେ ଶେଷ କରିଦେବେ ।

ଲଗ୍ନା—ଆଉ ସେଇଥିପାଇଁ ତମେ policeରେ report କରିନ, ଖବର କାଗଜରେ ବି ଦେଇନ, କାହାରି ପାଖରେ କିଛି ଆପତ୍ତି ଅଭିଯୋଗ ନ କରି ନୀରବରେ ଶାସ୍ତି ଗ୍ରହଣ କରିଚ ?

ଅନାମ—ମୁଁ ଆଉ କ'ଣ କରିଥାନ୍ତି ?

ଲଗ୍ନା—ତା' ହେଇପାରିବନି । ତମକୁ ଏଇ ଅନ୍ୟାୟ ଅବସ୍ଥାର ବିରୁଦ୍ଧରେ ଲଢ଼ିବାକୁ ହବ । ସେମାନଙ୍କୁ expose କରିବାକୁ ହବ ।

ଅନାମ - କିନ୍ତୁ କେମିତି ?

ଲଗ୍ନା—ତୁମେ ସେଇ ଲୋକମାନଙ୍କୁ ଚିହ୍ନିପାରିବ ତ ? ଧର, ଗୋଟାଏ ଚିହ୍ନଟ ପ୍ୟାରେଡ୍ ହେଲ...ପାରିବ ?

ଅନାମ—ନା ।

ଲଗ୍ନା—ଆଚ୍ଛା, ସେଇ ଟ୍ରକର ନମ୍ବରଟା ତୁମର ମନେ ଥିବ ନିଶ୍ଚୟ ।

ଅନାମ - ହଁ, ମନେ ଅଛି ।

ଲଗ୍ନା ସେତିକି police ପାଖରେ ନେଇ ପହଞ୍ଚେଇଦେଲେ ହେଲା । ଦେଖିବ ସେମାନେ ଯିବେ କୁଆଡ଼େ ?

ଅନାମ—କିନ୍ତୁ...ସେମାନେ ଯେ କି ଭୀଷଣ, ତା ତୁମେ ଜାଣନା !

ଲଗ୍ନା—ଜାଣିଚି ! ଯାହା ହେଲେ ବି ତୁମକୁ କହିବାକୁ ହବ । ଦେଖିବ, ସେ scoundrelମାନଙ୍କୁ trace out କରି ହଉଚି କି ନାହିଁ ।

( ବାହାକୁ ଶୃଙ୍ଖଳ ସୁମିତାର ହସ )

ଲଗ୍ନା—କିଏ ? କିଏ ସେ ସ୍ୱପ୍ନରେ ? ( ସୁମିତା ଉତ [illegible] )

ସୁମିତା—ଗୋଟାଏ ବୁଢ଼ିଆଣୀର ଜାଲ ବୁଣି ତମେ ମହୁମାଛି ଧରିପାରିବ ବୋଲି ଭାବିଚ ? ଭୁଲ, ସେ ଚେଷ୍ଟା କରନା ।

ଲଗ୍ନା ଆପଣ କିଏ ? ଆପଣଙ୍କୁ ମୁଁ ଥରେ କୋଉଠି ଦେଖି ଥିଲି ନା ?

ସୁମିତା—ମନେ ରଖିଚ ତା' ହେଲେ ? ହଁ, ମନେ ରଖିବା କଥା ! ମୋ ମୁହଁଟା ଥରେ ଦେଖିଲେ ଆଉ ଭୁଲି ହୁଏନା । କ'ଣ, ସତ ନୁହେଁ ?

ଲଗ୍ନା—ଆପଣ ଏଠି ?

ସୁମିତା—ହଁ, ତମର ପଛେ ପଛେ ମତେ ବାଧ୍ୟ ହେଇ ଆସିବାକୁ ପଡ଼ିଲା ।

ଲଗ୍ନା—ମୋ ପଛେ ପଛେ ? କାହିଁକି ?

ସୁମିତା—କାରଣ, ତମ ଭଳି ବୋକା ଝିଅ କୋଉଠି ଯେ ଠକିଯିବ···! ଜନ୍ତୁଗଣ ତୁମେ ଦେଖିଚ, ହେଲେ, ଝଡ଼, ଝଞ୍ଜା, ବଜ୍ର, ବଜ୍ରାଘାତ ତୁମେ ଦେଖିନ । ଏବେ ବି ବୁଝି ପାରୁନାହଁ ତୁମ ରାସ୍ତାରେ କେତେ କଣ୍ଟା, କେତେ ବିପଦ ! ସବୁ ଜାଣିଶୁଣି ତୁମେ ଏକା ଏକା ଏଠିକି ଆସିଚ କୋଉ ସାହସରେ ?

ଲଗ୍ନା—ନ ଆସିବି କାହିଁକି ? ମୁଁ କାହାରିକୁ ଭୟ କରେନା । ମୋର ଯାହା ହବାର ହେଉଯାଉ; କିନ୍ତୁ ମୋ ପାଇଁ ବିନା ଦୋଷରେ ନିରୀହ ସରଳ ମଣିଷ ଏଠି ଇମିତି ଶାସ୍ତି ପାଇବ, ଆଉ ମୁଁ ତା' ନୀରବରେ ସହ୍ୟ କରିଯିବି ? ନା, ନା, ତା ହେଇପାରେନା । ମୁଁ ସେମାନଙ୍କୁ expose କରିବି ।

ସୁମିତା—ଦେଖ, ଏଇଟା କାଠ, କନା ଆଉ କାଗଜ, ରଙ୍ଗର ତିଆରି ଷ୍ଟୁଡ଼ିଓର ସେଟିଂ ନୁହେ । କିମ୍ୱା ଖବ ନାହିଁ ଯେ ଗୋଟାଏ ଡିଟେକ୍‌ଟିଭ ଫିଲ୍ମ୍‌ର ସୁଟିଂ ଚାଲିଚ ।

ଲଗ୍ନା—( ଦମ୍ଭରେ ) ଜାଣେ, ଏଇଟା ଷ୍ଟୁଡ଼ିଓର ସେଟିଂ ନୁହେ କି କୌଣସି ଡିଟେକ୍‌ଟିଭ୍ ବହିର କାହାଣୀ ନୁହେ । ତଥାପି ଆପଣଙ୍କ କଥାରୁ ମନେ ହଉଚ, ଏହା ପଛରେ ଅନେକ ରହସ୍ୟ ଅଛି, ରୋମାଞ୍ଚ ଅଛି ।

ସୁମିତା—କିନ୍ତୁ ସେ ରହସ୍ୟ ସନ୍ଧାନ କରିବାର ସମୟ ବର୍ତ୍ତମାନ ନୁହେଁ । ତୁମେ ଏଠୁ ଚାଲିଆସ; ନ ହେଲେ ବିପଦ ।

ଅନାମ—ହଁ, ଆଜ୍ଞା, ତାଙ୍କୁ ନେଇଯାନ୍ତୁ ଆପଣ । ଯେତେ ଶୀଘ୍ର ପାରନ୍ତି, ତାଙ୍କୁ ଏଠୁ ନେଇଯାନ୍ତୁ । ତା ନ ହେଲେ ତାଙ୍କର ବି ମୋର ପରି କଣ ନା କଣ ହେଇଯିବ ।

ଲଗ୍ନା—ହଉ, ଯାହା ହବାର ହଉ; ହେଲେ ଜାଣି ଜାଣି ତୁମକୁ ଇମିତି ଅସହାୟ ଖ୍ୱବରେ ଛାଡ଼ି ମୁଁ ଯାଇପାରିବ ନାହିଁ ।

ସୁମିତା—( ହସି ) ଯଦି ସେ ଚେଷ୍ଟା କର, ତା ହେଲେ ତମେ ବି ଏଠୁ ଯାଇ-ପାରିବ ନାହିଁ, ଲଗ୍ନା !

ଅନାମ—ଅବୁଝା ହୁଅନ, ଲଗ୍ନା ଦେବୀ !

ଲଗ୍ନା—ନା, ନା, ମୁଁ କିଛୁ ବୁଝିବାକୁ ଚାହେଁନା ! ( ବାସ୍ନାଣୀଙ୍କ ପରି )

ସୁମିତା—କିଛୁ ବୁଝିବା ଦରକାର ନାହିଁ, ତୁମେ ଆସ···! ( ଟାଣିନଉଥିଲ )

ଲଗ୍ନା—( ହାତ ଛଡ଼େଇ ) କିନ୍ତୁ ଅନାମବାବୁଙ୍କୁ ଛାଡ଼ି···

ସୁମିତା - ସେ ଦାୟିତ୍ୱ ମୋର । ଆସ, ଚାଲିଆସ, ଜଲ୍ଦି ।

ଲଗ୍ନା—ନା, ସେ କଥା ହେଇପାରିବ ନାହିଁ; ଆପଣ ଚାଲିଯାଆନ୍ତୁ !

ଅନାମ —ଲଗ୍ନା ଦେବୀ···!

ସୁମିତା—ଚାଲିଆସ, ଲଗ୍ନା, ଆସ ! ( ଏତିକିବେଳେ ଦେଖାଗଲା ଝରକା ପାଖରେ ଗୋଟିଏ କଳା ଛାଇ ରିଭଲ୍‌ଭର୍ ହାତରେ )

ଲଗ୍ନା—ନା, ନା, ମୁଁ ଯିବିନାହିଁ ! ( ହଠାତ୍ ବାହାରେ ଏକ ପିସ୍ତଲ ଫାୟାର୍ ହେଲା । ଲଣ୍ଠନ କାଚଟି ଝଣ ଝଣ ହେଇ ଭାଙ୍ଗିଗଲା ଓ ଘରଟି ଅନ୍ଧାର ହେଇଗଲା । )



## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

[ ଜୟନ୍ତଙ୍କର ପୂର୍ବର ସେଇ flat. ସମୟ ସକାଳ । ଲଗ୍ନା drawing roomରେ ବସି ଆଜର ଚଠିପତ୍ର ପ୍ରତି ନଜର ଦଉଥିଲା । ନିଜ ନାମରେ ଆସିଥିବା ଚଠିପତ୍ର ଆମୂଳ ପ୍ରତି ପାଉଥିଲା । ହଠାତ୍ ତା ର ଦୃଷ୍ଟି ରହିଯାଇଛ ଗୋଟାଏ ଚଠି ଉପରେ । ମୁହଁରେ ଆମୂଳ ପ୍ରତିର ହସ ପରିବର୍ତ୍ତେ ଦେଖାଯାଇଛ ଆଶ୍ଚର୍ଯ୍ୟର ଭାବ । ଏକ ନାରୀ କଣ୍ଠରୁ ଆବୃତ୍ତି ଶୁଣାଯାଇଛ—]

ସଞ୍ଜୀବର ସ୍ତ୍ରୀର କଣ୍ଠସ୍ୱର—ଲଗ୍ନା ଦେବୀ, ତୁମେ ମତେ ଚହ୍ନନା । ତଥାପି ମୁଁ ତୁମ ପାଖକୁ ଲେଖୁଛ । ସଞ୍ଜୀବବାବୁଙ୍କୁ ତୁମେ ଜାଣ । ମୁଁ ତାଙ୍କର ସ୍ତ୍ରୀ । ଅଭିନୟ କଣାରେ ସେ ପାଗଳ । ତୁମେ ଜାଣନା, ତାଙ୍କର ଏଇ ପ୍ରଯୋଜକ ହବାର ଖିଆଲ ଭିତରେ ଆମ ଘରର ଅବସ୍ଥା କ'ଣ ହେଇଛ···( music )—ଏତେଦିନ ଯାଏ ଏ ସବୁ କାହାକୁ କିଛୁ କହି ନ ଥିଲି । ଆଜି କିନ୍ତୁ ମତେ ବାଧ୍ୟ ହେଇ ତମ ପାଖକୁ ଲେଖିବାକୁ ପଡ଼ିଲା । ତାଙ୍କର ଝିଅକୁ ଆଜି ଜର । ତାକୁ ଟିକେ ଔଷଧ ଦବାପାଇଁ ମଧ୍ୟ ମୋ ପାଖରେ ସମ୍ବଳ ନାହିଁ—( music )—ଏ ବେଳରେ ବି ତାଙ୍କର ଦେଖାନାହିଁ ; ସେ ତାଙ୍କ "ଛବି" ନେଇ ବ୍ୟସ୍ତ । ଆଜି ତାଙ୍କର ଏ ଅବସ୍ଥା ପାଇଁ ଦାୟୀ ହଉଚ ତୁମେ—( music )—ତୁମକୁ ନାୟିକା ସଜେଇ ତୁମ ସାଥିରେ ଅଭିନୟ କରିବାପାଇଁ ସେ

ପାଗଳ ହୋଇଚାନ୍ତି । ଆଜି ତୁମେ ପାଗଳ ହୋଇଚ ନାଁ ପାଇଁ, ଟଙ୍କାପାଇଁ (music) ତୁମେ କ'ଣ ତା' ହେଲେ ଏସ୍ଥା ଗ୍ଧର୍ଁ ଯେ ତୁମକୁ ପାଇଁ ଲୋକେ ପାଗଳ ହେବେ—ଘରସଂସାର ଭୁଲିଯିବେ—ଅଜସ୍ର ଟଙ୍କା ଖ୍ରାଛ କରିବେ —ତୁମର ପାଇଁ ସେମାନେ ସବୁକିଛି ହରେଇ ଶେଷକୁ କାଙ୍ଗାଳ ହୋଇ ଘୁରିବୁଲିବେ ? (music) ସତରେ ତୁମେ ଏଠ ଏସ୍ଥା ଗ୍ଧର୍ଁ ଥାଅ, ମୁଁ କହୁଚି, ତୁମେ ଶିଳ୍ପୀ ନୁହଁ, ନାରୀ ନୁହଁ, ତୁମେ ଗୋଟିଏ ଡାହାଣୀ ଡାହାଣୀ—

[ 'ଡାହାଣୀ' ଶବ୍ଦଟା ପ୍ରତିଧ୍ୱନିତ ହୋଇ ଉଠିଚ ବାରମ୍ବାର । ଲଗ୍ନା ସହ୍ୟ କରି ନ ପାରି ନିଜ କାନକୁ ବନ୍ଦ କରିଦେଇଚି । 'ନା' କହି ଚିତ୍କାର କରି ଉଠିଚ । ପ୍ରବେଶ କରିଚନ୍ତି ଜୟନ୍ତ— ହାତରେ ଗୋଟାଏ ଫାଇଲ ]

ଜୟନ୍ତ—କ'ଣ ହେଉଚ, ଲଗ୍ନା ? କ'ଣ ହେଉଚ ?

ଲଗ୍ନା—କ'ଣ ହେଉଚ, ମତେ ନ ପଚାରି ତମେ ବରଂ ଚିଠିଟା ପଢ଼ି ଦେଖ ! (କହି ଚିଠିଟା ବଢ଼େଇଦେଲା)

ଜୟନ୍ତ—ଚିଠି କାହାର ? ଜାଣେ, ସଞ୍ଜୀବର ସ୍ତ୍ରୀ ମତେ ବି ଲେଖିଥିଲା···

ଲଗ୍ନା—ତା'ହେଲେ ଆପଣ ଜାଣିଶୁଣି ଇମିତି ନୀରବ ରହିପାରିଲେ ।

(ଆଖିରେ ଲୁହ)

ଜୟନ୍ତ—ମୋର ନୀରବ ରହିବା ଉଚିତ ବୋଲି ମନେ କଲି ।

ଲଗ୍ନା—ନା···

ଜୟନ୍ତ—ହଁ, କାହାରି ଘରୋଇ ବ୍ୟାପାରରେ interfere କରିବା ବୁଦ୍ଧିମାନର କାମ ନୁହେଁ ।

ଲଗ୍ନା—ଘରୋଇ ବ୍ୟାପାରରେ interfere କରିବା ବୁଦ୍ଧିମାନର କାମ ନୁହେଁ ; ଅଥଚ ଜଣକର ଘରସଂସାରକୁ ଉଜାଡ଼ିଦେଇ ସତାସତ ତାକୁ ଗୋଟାଏ filmର ହିରୋଇନ୍ କରି ଛବି କରେଇଦେବା ଖାଲି ବୁଦ୍ଧିମାନର କାମ ?

ଜୟନ୍ତ—ଠିକ୍ କହୁଛ, ଲଗ୍ନା, ସେଇଟା ହେଉଛି film industryରେ ଖାଲି ବୁଦ୍ଧିମାନର କାମ ନୁହେଁ, ସବୁଠୁ ବଡ଼ Political Victory !

ଲଗ୍ନା—ବନ୍ଦ କରନ୍ତୁ, ଜୟନ୍ତବାବୁ ! ମୁଁ ଜାଣିଥିଲି, ସଞ୍ଜୀବବାବୁ ଆପଣଙ୍କର ବନ୍ଧୁ । ଅଥଚ ଆପଣ ତାଙ୍କୁ ଇମିତି ନିର୍ମମ ଭାବରେ exploit କଲ ପୂର୍ବରୁ ତାଙ୍କ ଘରର ପରିସ୍ଥିତି ବିଷୟ ଟିକିଏ ହେଲେ ଭାବିଲେ ନି ?

ଜୟନ୍ତ—ଜାଣି ଜାଣି ଯେ ଅଚେତନ ହୋଇଛି, ତାକୁ ମୁଁ ସଚେତନ କରିବାର ବୃଥା ଚେଷ୍ଟା କାହିଁକି କରିବି ?

ଲଗ୍ନା—ଜୟନ୍ତବାବୁ ! !

ଜୟନ୍ତ—ହଁ, ଲଗ୍ନା, I frankly admit before you, ମୁଁ ତାକୁ exploit କରିନାହିଁ—ସେ exploited ହୋଇଛି ନିଜେ-ନିଜେ । ତମ ସାଙ୍ଗରେ ଗୃହର ଭୂମିକାରେ ଅଭିନୟ କରି ସେ ମନରେ ଶାନ୍ତି ପାଇଲା ନାହିଁ ; ସେ ଚାହିଁଲା ନିଜେ Hero ହବାକୁ । ଆଉ ତାର egoକୁ satisfy କରିବାକୁ ଯାଇ ସେ ହୋଇଛି Producar—ହଜିଦେଇଛି ଲକ୍ଷ ଲକ୍ଷ ଟଙ୍କା ।

ଲଗ୍ନା—କିନ୍ତୁ ନିଜ ହାତରୁ ଟଙ୍କା ଖର୍ଚ୍ଚ କରି ଇମିତି ନାୟକ ସାଜିବାରେ କ'ଣ ମିଳେ ? କ'ଣ ଲାଭ ଏମାନଙ୍କର ?

ଜୟନ୍ତ—ତମଭଳିଆ ଜଣେ ନାୟିକାର ସାନ୍ନିଧ୍ୟ ।

ଲଗ୍ନା—ତା'ହେଲେ ଆପଣ କ'ଣ କହୁଚନ୍ତି, ମୋର ପାଇଁ ସଞ୍ଜୀବବାବୁ ତାଙ୍କ ଘରର ସର୍ବନାଶ କରିବସିଚନ୍ତି ?

ଜୟନ୍ତ—ହଁ, ଲଗ୍ନା, ଖାଲି ତମର ପାଇଁ···ଏକା ସଞ୍ଜୀବ କାହିଁକି, ସଞ୍ଜୀବ ପରି ଅନେକ ଆସିଚନ୍ତି । ତମର ରୂପର ବହ୍ନି ଶିଖାରେ ଅନ୍ଧ ପତଙ୍ଗ ପରି ଝାସ ଦେଇଚନ୍ତି ଯୋଉମାନେ, ସେମାନଙ୍କୁ ଜଳିପୋଡ଼ି ମରିବାକୁ ଦିଅ—Let them die.

ଲଗ୍ନା—ତା'ହେଲେ ସଞ୍ଜୀବବାବୁଙ୍କର ସ୍ତ୍ରୀ ଯାହା ଲେଖିଚନ୍ତି, ସବୁ ସତ ? ଏସବୁ ପାଇଁ ମୁଁ ଦାୟୀ ? ( କାନ୍ଦଉଠିଚ )

ଜୟନ୍ତ—ନା, ଲଗ୍ନା ଅନୁତାପ ନୁହେଁ । ତୁମେ ଏମାନଙ୍କୁ ଜାଣନା । ଆଜି ଯୋଉ-ମାନେ ଛବି କରିବାକୁ ଆଗେଇଆସୁଚନ୍ତି, ସେମାନଙ୍କ ଭିତରୁ ଅଧିକାଂଶଙ୍କ ପାଖରେ ଉନ୍ନତ ରୁଚି ନାହିଁ—ନାହିଁ ଉଚ୍ଚକୋଟୀର କଳାଚର୍ଚ୍ଚାର ଶପଥ, ନାହିଁ ନିଷ୍ଠା, ନାହିଁ ପ୍ରତିଭା । ସେମାନଙ୍କ ଆଖି ଆଗରେ ଖାଲି ତମେ ତମର ଏଇ ଦେହ ଏଇ ରୂପ—ଏଇ glamour.

ଲଗ୍ନା—ଜୟନ୍ତବାବୁ ! !

ଜୟନ୍ତ—ହଁ, ଲଗ୍ନା, ତମେଇ ସେମାନଙ୍କ ଆଖି ଆଗରେ ଠିଆ ହେଉଚ ସ୍ୱର୍ଣ୍ଣ-ହରିଣୀର ମାୟା ନେଇ—ଦୂର ପାହାଡ଼ର ବନ୍ଧୁଗନ୍ଧ ଶ୍ୟାମଳିମା ନେଇ । ସେମାନେ ତମରି ପଛରେ ଦଉଡ଼ିବାକୁ ଚାହାନ୍ତି, ଚାହାନ୍ତି ନିଜକୁ ତମର ଧରିଛୁଆଁର ପରିଧି ଭିତରେ ।

ଲଗ୍ନା—ଆଉ ସେମାନଙ୍କର ଏଇ ଦୁର୍ବଳତାର ସୁଯୋଗ ନେଇ ଆପଣ ଚାହାନ୍ତି ଛବି କରିବାକୁ ! How mean you are !!

ଜୟନ୍ତ—Don't be sentimental, ଲଗ୍ନା ! ସେମାନଙ୍କୁ ସହାନୁଭୂତି ଦେଖାଇବାର ବୋକାମି ତୁମେ କରନା । କଞ୍ଚା ମାଟିରୁ ମୁଁ ତମକୁ ଶିଳ୍ପୀ କରି ଗଢ଼ିଚି । ଆଖି ବୁଜି ଗୋଟିକ ପରେ ଗୋଟିଏ ଛବିର ସୁଯୋଗ, ମୁଁ ତୁମକୁ ଦେଉଚି । ତୁମେ ଆଗେଇ ଚାଲ, ଲଗ୍ନା ! ଆଜି ତୁମେ ହେଉଚ ଏଇ ଶ୍ଲେଟ ଆକାଶର ଅନାମିକା ତାରା । ଦିନ ଆସିବ, ହୁଏତ ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରତିଯୋଗିତା କରି ତୁମେ ନିଜର ପ୍ରତିଭା ପାଇଁ ବିଶ୍ୱର ଶ୍ରେଷ୍ଠ award ନେଇ ଆସିବ । ସେ ଦିନକୁ ତୁମେ କାମନାକର । ସେଇଠି ପହଞ୍ଚିବାକୁ ତୁମେ କାମନାକର । ସେଇଠି ପହଞ୍ଚିବାକୁ ତୁମେ ସାଧନା କର । Let one wish you those great days.

[ ଜୟନ୍ତ ଫାଇଲ ନେଇ ଚାଲିଗଲେ । ଲଗ୍ନା କାନ୍ଦୁଥିଲା । ବାହାରୁ ଆସିଲେ ରାଜୀବ ]

ରାଜୀବ –ଆରେ ଲଗ୍ନା ଦେବୀ, ଆପଣ କାନ୍ଦୁଚନ୍ତି ? ଛାଃ ଛାଃ ! ନା, ନା, କାନ୍ଦନ୍ତୁ ନାହିଁ । ଆପଣଙ୍କୁ ଗୋଟେ ଭଲ ଖବର ଦେବି ।

ଲଗ୍ନା—ରାଜୀବବାବୁ ! ( ଆଶ୍ଚର୍ଯ୍ୟ ହୋଇ )

ରାଜୀବ—ଆପଣ ଜାଣିଚନ୍ତି, ଲଗ୍ନା ଦେବୀ, ଆପଣ ଯେଉଁ 'ଅଶ୍ରୁପୁରବୀ'ରେ ଅଭିନୟ କରିଥିଲେ ସେ ବହି ହିନ୍ଦିରେ ହେଉଚି । Producer ମତେ ବହୁତ ଟଙ୍କା ଦେଇଚନ୍ତି । କେତେ, ଜାଣନ୍ତି ? କୋଡ଼ିଏ ହଜାର ଟଙ୍କା । ଆଜିଯାଏ କୌଣସି ଲେଖକ ଏତେ ଟଙ୍କା ପାଇନାହାନ୍ତି ।

ଲଗ୍ନା—ରାଜୀବବାବୁ ! ଆପଣ କେଡ଼େ ବଡ଼ ଲେଖକ ! ଆପଣଙ୍କ ଅବସ୍ଥା କ'ଣ ହେଲଣି ?

ରାଜୀବ—( ନିଜକୁ ପରୀକ୍ଷା କରି ) ନାହିଁ, କିଛି ତ ହୋଇନି । ପ୍ରତାରିତ ହୋଇଚି କୋଡ଼ିଏ ହଜାର ଟଙ୍କାର ମାଲିକ । ହେଇ, ଦେଖୁନାହାନ୍ତି । ( ଚୁଣ୍ଡା କାଗଜ ବାହାର କରି ) ହେଲେ, ଏତେ ଟଙ୍କା ମୁଁ କୋଉଠି ରଖିବି, କହି ପାରିବେ ଲଗ୍ନା ଦେବୀ ?

ଲଗ୍ନା—ଟଙ୍କାର ସ୍ୱପ୍ନ ଆପଣଙ୍କୁ ପାଗଳ କରିଚି, ରାଜୀବବାବୁ ! ଆପଣ ବି ସ୍ୱର୍ଣ୍ଣମୃଗ ପଛରେ ଛୁଟିଚନ୍ତି । ଆପଣ ବି ଦୂର ପାହାଡ଼କୁ ଛୁଇଁବାକୁ ଚେଷ୍ଟା କରିଚନ୍ତି । ହେଲେ, କାହିଁକି ? କ'ଣ ମିଳୁଚି ମରୀଚିକାର ମିଛ ମାୟା ନେଇ ଦୌଡ଼ିବାରେ ? କିଏ ? କିଏ ଆପଣଙ୍କୁ ଏସବୁ କହି ଅନ୍ଧ ଆଖିରେ ଆଲୋକର ଉପହାସ ଆଣି ଦେଇଚି ?

ରାଜୀବ—ଉପହାସ ? ଆପଣ ବିଶ୍ୱାସ କରୁନାହାନ୍ତି, ଲଗ୍ନା ଦେବୀ ? ନା, ଆପଣ ମତେ ଈର୍ଷା କରୁଚନ୍ତି । ସମସ୍ତେ ମତେ ଈର୍ଷା କରୁଚନ୍ତି ।

( କାନ୍ଦି କାନ୍ଦି ଆଖିରୁ ଲୁହ ପୋଛି ବାହାରକୁ ଚାଲିଗଲେ )

ଲଗ୍ନା—ଖାଲି ଏକା ରାଜୀବବାବୁ ପାଗଳ ନୁହଁ । ରାଜୀବବାବୁ ବି ପାଗଳ । ହୁଏତ ଆହୁରି ଅନେକ ପାଗଳ ହେବେ । ସେମାନଙ୍କର ମୁଁ ନାୟିକା । ସେମାନେ ସବୁ ମୋ ପାଇଁ ପାଗଳ ହେବେ । କିନ୍ତୁ ମୁଁ ହେବିନି ।

ସୁମିତା—( ବାହାରୁ ଆସିଚ ) ତୁମେ ପାଗଳ ହେଲେ ସତରେ ଚଳିବନି, ଲଗ୍ନା ! ଅନେକ ଲୋକ ଯେ ତୁମକୁ ଅପେକ୍ଷା କରୁଚନ୍ତି ।

ଲଗ୍ନା—ମୁଁ କିନ୍ତୁ ଆପଣଙ୍କୁ ସତରେ ଅପେକ୍ଷା କରୁଥିଲି ।

ସୁମିତା—ମତେ ? କାହିଁକି ?

ଲଗ୍ନା—ଇମିତି ସମୟରେ ମୋର ଆପଣଙ୍କ କଥା ମନେପଡ଼େ । ସବୁବେଳେ, ଆପଣ ମୋ ପାଖରେ ଥାଆନ୍ତେ; ମୁଁ ଟିକେ ଶାନ୍ତିପାନ୍ତି ।

ସୁମିତା—କିନ୍ତୁ କାହିଁକି, ଲଗ୍ନା, କଣ ତୁମର ଅଭାବ ? କଣ ତୁମର ଅଶାନ୍ତି ?

ଲଗ୍ନା—ଅଭାବ ନାହିଁ, ଦୁଃଖ ନାହିଁ । ଏ ଅଶାନ୍ତି ପ୍ରାଚୁର୍ଯ୍ୟର, ଏ ଆଶଙ୍କା ପରିପୂର୍ଣ୍ଣତାର, ଏ ଦଂଶନ ବିବେକର...!

ସୁମିତା—ଅଭିନେତ୍ରୀ ଜୀବନରେ ବିବେକ ବୋଲି କିଛି ରହିପାରେ ? ବିବେକର ଦଂଶନ ନେଇ କେହି କଣ କେବେ ଅଭିନେତ୍ରୀ ହୋଇପାରେ ? ସେଇଥି-ପାଇଁ ତୁମକୁ ଭୁଲିଯିବାକୁ ପଡ଼ିବ, ତୁମର ବିବେକ ବୋଲି କିଛି ଅଛି, ହୃଦୟ ବୋଲି କିଛି ଅଛି । ଖାଲି ଅନ୍ୟମାନଙ୍କର ରୁଚି ଧରି ରଖିବାକୁ ତୁମେ ଏକା ଅଭିନେତ୍ରୀ ।

ଲଗ୍ନା—ମୁଁ କିନ୍ତୁ ପାରୁନି, ମୁଁ ପାରୁନି, ମୁଁ ତା ହୋଇପାରୁନି । ( କାନ୍ଦିକାନ୍ଦି କାଉଚ୍‌ରେ ବସିଯାଇଚ । ଏଇ ସମୟରେ ରିଙ୍ଗ୍ ହେଉଚ । ସୁମିତା ରିସିଭର ଧରୁଚ )

ସୁମିତା—( ଫୋନ ଧରି ) କିଏ ? କୋଉଠୁ କହୁଚନ୍ତି ? ନର୍ସିଂ ହୋମରୁ ? ( ଲଗ୍ନା ଫୋନ ପାଖକୁ ଯାଇ ) ହଁ, କଣ କହୁଚେ ? ଅନାମବାବୁଙ୍କର ଟେମ୍ପରେଚର ବଢ଼ିଚି ? ହଁ, କଣ କହୁଲେ ?...ସେ କନକ, କନକ ବୋଲି ଚିତ୍କାର କରୁଚନ୍ତି ? ( ହଠାତ୍ ବାହାରୁ ପୂର୍ବର ସେହି ଗୀତର ଲହରୀ ଭାସିଆସିଚ । ଲଗ୍ନାର ଆଖିରେ ଲୁହ । )

**ମଞ୍ଚ ଅନ୍ଧକାର ହେଉଚ**

## ଦ୍ୱିତୀୟ ଦୃଶ୍ୟ

[ ଅନାମର ଗାଁ' ଘର ଅଗଣା । ରାତିର ତୃତୀୟ ପ୍ରହର । ଜହ୍ନର ଝାପସା ଆଲୁଅରେ ଦେଖାଗଲା କନକ ନିଦରୁ ଉଠିଆସି କବାଟ ଫିଟାଇଦେଇ ଦେଖିଛି ଅନାମକୁ ରାଜକୁମାର ବେଶରେ । ହାତରେ ଲୁଗା, କାଚ, ସିନ୍ଦୂର ଧରି ଆସିଛି ଅନାମ । ଅନାମକୁ ଦେଖି ଲାଜରେ ଓଢ଼ଣା ଦେଇ ଛିଡ଼ାହେଲା କନକ ]।

ଅନାମ—କନକ ! କଲେ, ଏମିତି କଣ ଖୁଣ୍ଟା ପରି ଛିଡ଼ା ହେଲୁ ? ଏଗୁଡ଼ାକ ନେଇ ଭିତରେ ଥୋଇଦେଇଆ !

କନକ—ସେମିତି ନାଁ ଧରି ଏମିତି ଡାକବ ନାହିଁ ।

ଅନାମ—ଡାକବ ନାହିଁ ! କଲେ, କଥା କଣ ? ଇମିତି ଓଢ଼ଣା ଟାଣୁଚୁ କ'ଣ ?

କନକ—ତମେ କିଛୁ ଜାଣିନା ? ( ଲାଜରେ )

ଅନାମ—କୋଉ କଥା ?

କନକ—ଏଇ······ଗାଁରେ ସମସ୍ତେ ଯୋଉ କଥା କହୁଚନ୍ତି···ମଲା, ସେକଥା ମୁଁ କମିତି କହିବ ଯେ ?

ଅନାମ—ଆଉ ମୁଁ କମିତି ବୁଝିବ ଯେ ?

କନକ—ନ ବୁଝିଲେ ନାହିଁ, ମୁଁ କଣ କରିବ ଯେ ?

ଅନାମ—ନ କହିଲେ ନାହିଁ; ମୋର ବେଳ ନାହିଁ ତୋ ସଙ୍ଗେ ଲାଗିବାକୁ । ନେ, ନେଲୁ ଏଗୁଡ଼ାକ ! ଯା, ପଖାଳ ବାଢ଼ିବୁ । ମୋ ହଂସା ଉଡ଼ିଯାଉଚି ଏ ଗୋହିର ବାଟରେ ଗୁଲ ଗୁଲ । ଆଲୋ, ନେ ! ନ ନେଲେ ନାହିଁ;

ହେଉଛି, ତଳେ ଥୋଇଦେଲ । ଯା, ମୋ ଗାମୁଛାଟା ଆଣିଲୁ, ମୁଁ ଯାଇଁ ଠାକୁରାଣୀ ପୋଖରୀରେ ଦ'ବୁଡ଼ ମାରେଁ । ସେଠି ଜଳପାଣିରେ ଗାଧୋଇ ଗାଧୋଇ ମଣିଷ ଦେହରୁ କାଠ ଗୁଣ୍ଡ ଗଲାଣି । ଅଲେ ଅନେଇଚୁ କଣ ? ଯା...! ଯାଉଚୁ, ନା, ଦେଖିବୁ ?

( ହାତ ଉଠାଇଲ ମାରିବାକୁ । କନକ ଘୁଞ୍ଚିଗଲା । )

କନକ—ବାପା କହୁଚନ୍ତି, ତମେ ଏମିତି କଥା କହୁବନି ।

ଅନାମ—କାହିଁକି ? କାହିଁକି କହିବିନି ? ଅଲବତ କହିବ । ବାପା ଗୁଡ଼ ବଡ଼ ବାପା ଆସିଲେ ବି କହିବ ।

କନକ—ଛି, ଗାଁ ଲୋକ ଶୁଣିଲେ କଣ କହିବେ ? ଘର ଭିତରେ ଏମିତି ପାଟିତୁଣ୍ଡ କରୁଚ ?

ଅନାମ—ଗାଁ ଲୋକେ ଶୁଣିଲେ କହିବେ ? କଣ କହିବେ ? ଇଏ କୋଉ ନୂଆ କଥାଟା ଯେ ? ମୁଁ ତ ସବୁଦିନେ ତୋ ପିଠିରେ ତ ଘୁଷାଟା ଥୁଏ । ସେଇଠୁ ତୁ ଭେଁ ଭେଁ ହେଇ ଘରକୁ ଯାଉ । ଫେର୍ ତା ପରଦିନ ସକାଳେ ଉପରେ ପଡ଼ି କଥା କହୁ ।

କନକ—ମିଛ କଥା ! ତମେ ତ ଆଗେ ଉପରେ ପଡ଼ି ମୋ ସାଙ୍ଗରେ......

ଅନାମ—ମିଛ କଥା ! ତୁ ଆଗେ ମୋ ସାଙ୍ଗରେ......

କନକ—ନା, ତମେ...!

ଅନାମ—ନା, ତୁ...!

କନକ—ନା, ତମେ ! ( ରାଗରେ ଗୁଲପଡ଼ୁଚ । ମୁଣ୍ଡରୁ ତା'ର ଓଢ଼ଣା ଖସିଯାଇଚ । ଲାଜରେ ଜିଭ କାମୁଡ଼ିପକେଇ କହୁଚ ) ଛି, ଦୁଅପିଲା ହେଇ ତୁମେ ଏତେ ମିଛ କଥା କହିପାର ?

ଅନାମ—ଝିଅପିଲା ହେଇ ମିଛ କଥା କହିବାକୁ ତୋ ପାଟିରେ ବାଟୁଲି ବାଜୁନି ! ଆଉ ମୁଁ ପୁଅପିଲା ହେଇ ପଚେଇଯିବ କାହିଁକି ମ ?

କନକ—ହଉ, ଦେଖିବା ! ଆଜଠୁ କଏ କାହାକୁ ଆଗେ କଥା କହୁଚ, ଦେଖିବା ଯେ ।

ଅନାମ—ହଉ, ଦେଖିବା ! କଥା ରହିଲା ।

କନକ—ତୁମ ସାଙ୍ଗରେ କଥା ନ କହିଲେ ମୁଁ ତ ଭାସିଯାଉଚ ? ମୁଁ ମୋର ରାନ୍ଧିବ, ବାଢ଼ିବ, ଗାଁସାରା ବୁଲିବ !

ଅନାମ—ତୋ ସାଙ୍ଗରେ କଥା ନ କହିଲେ ମୋର କୋଉ ଅଚଳ ରହିଯାଉଚ ଯେ ? ମୁଁ ମୋର ହାତେ ହାତେ ବାଢ଼ିବ, ଖାଇବ, ପୋଖରୀରୂଠରେ ବସି ବନ୍‌ସି ପକେଇବ ।

କନକ—କାହିଁକି ପୋଖରୀରୂଠରେ ? କାହିଁକି, ଆଉ କୋଉଠି ତୁମକୁ ଜାଗା ମିଳୁନି କି ?

ଅନାମ—ଓ, ତୁ ସେଇଠି ଯାଇ ଗାଧେଇବୁ ! ହଉ ଏବେ ହେଲା, ମତେ ଯେମିତି ଆଉ ଜାଗା ମିଳୁନ ? ମୁଁ ମୋର ବୁଲିଯିବ ରଘୁନାଥଜୀଉଙ୍କ ତୋଟାକୁ । ସେଠି ଯୋଉ କଞ୍ଚାସୁଆଦଆ ଆମ୍ବ ହେଇଚ ନା··· !

କନକ—ମଜା, ସେଠିକି କାହିଁକି ଯିବ ଯେ ? ଆମେ ପଟ୍ଟ ନଇକୂ ସେଇବାଟେ ଫୁଲ ନେଇ ରଘୁନାଥଜୀଉଙ୍କ ମନ୍ଦିରକୁ ଯିବୁଁ !

ଅନାମ—ହଉ, ହେଲା । ସାରା ଗାଁଟାରେ ଅଉ ଯେମିତି ଜାଗା ନାହିଁ ! ମୁଁ ମୋର ସିଧା ବୁଲିଯିବ ନଈଘାଟକୁ ।

କନକ—ଯୁଆଡ଼େ ଯିବ, ଯାଅ; କେହେଲେ ନଈଘାଟକୁ ଯାଅନ । ମୁଁ ସେଠିକି ପାଣି ଆଣିବାକୁ ଯାଉଚ ।

ଅନାମ—ପୋଖରୀରୂଠ, ନଈଘାଟ, ରଘୁନାଥଜୀଉଙ୍କ ତୋଟା—ସବୁଆଡ଼କୁ ତ ତୁ ଯାଉଚ । ଆଉ ମୁଁ ଯିବ କୁଆଡ଼େ ? ମୁଁ ତା'ହେଲେ ଗାଁ ଛାଡ଼ି ଯାଉଚ ?

କନକ—ଯାଉନା, ଯାଅ ! କଏ ତୁମକୁ ରହିବାକୁ କହୁଚ କି ?

ଅନାମ—ହଁ , ଯିବ । ହେଲେ ଏଥର ଖାଲି ନୁହେଁ ; ୟାଡମଚ କୁଟା ଛଣ୍ଡେଇଦେଇ ଯିବ ।

କନକ—ଦେଇଯାଅ ! କଏ ମନା କରୁଚ କି ?

ଅନାମ—ଆଣିଲୁ କୁଟା ଖଣ୍ଡେ !

କନକ—ଆଣୁଚ । ( ଭିତରକୁ ଯାଇଚ । ମଞ୍ଚ ଅନ୍ଧକାର ହେଇଚ । କନକର ସ୍ୱପ୍ନ ଭାଙ୍ଗିଯାଇଚ । ସେ ନନ୍ଦବାଉଳାରେ ଉଠି ଆସିଚ ବାହାରକୁ, ସେଇ ଜାଗାକୁ । )

କନକ—ଅନାମ ଭାଇ, ଅନାମ ଭାଇ !

( ଭିତରୁ ଲଣ୍ଠନ ଧରି ଗୁରୁଚରଣ ଆସିଚନ୍ତି । ମଞ୍ଚ ଆଲୋକିତ ହେଲା )

ଗୁରୁଚରଣ—କ'ଣ ହେଇଚ, ମା ? ଅନାମ ଆସିଚ ? କାହିଁ, କୋଉଠି ?

କନକ—ଏଇନେ, ଏଇଠି ମୋ ସାଙ୍ଗରେ······

ଗୁରୁଚରଣ—ତୋ ସାଙ୍ଗରେ··· ? ( ଦାଣ୍ଡଦୁଆର ଦେଖିଆସି ) ଆରେ, ଦାଣ୍ଡଦୁଆର ତ ବନ୍ଦ ଅଛି ! ତୁ କ'ଣ ସପନ ଦେଖୁଥିଲୁ, ମା ?

କନକ—ଏଁ, ସପନ ? ସପନରେ ତା'ହେଲେ କ'ଣ ଅଳତା, ଚୁଡ଼ି ଶାଢ଼ି···

ଗୁରୁଚରଣ—ସେମିତି ହୁଏ, ମା ! ସପନରେ ସେମିତି ଅନେକ କଥା ସତ ବୋଲି ଦେଖାଯାଏ । ହେଲେ ସେସବୁ ସତ ନୁହେଁ, ମା ! ସେ ସ୍ୱପ୍ନ । ତୁ ବ୍ୟସ୍ତ ହୋ'ନା ମା, ସେ ସପନ । ତୁ ବ୍ୟସ୍ତ ହୋ'ନା । ଆସନ୍ତା ବାଲିଯାତ୍ରା ଦିନ ତୁ ଯିବୁ, ମୁଁ ଯିବି । ଆମେ ସମସ୍ତେ ଅନାମ ପାଖକୁ ଯିବା । ଚାଲ୍ ମା, ରାତି ବେଶି ହେଲାଣି, ଶୋଇବୁ ଯା ।

( ଭିତରୁ ବାବୁଲି ଚତ୍କାର କଲା )

ବାବୁଲି—ମାଉସୀ, କନକ ମାଉସୀ, କନକ ମାଉସୀ ! ମୋ ବୋଉ ଆସିଥିଲା ?

କନକ—କାହିଁ, କୋଉଠି ?

ବାବୁଲ—ହଁ, ମୁଁ ଦେଖିଚ, ସେ ଆସିଥିଲା । ମତେ କୋଳକୁ ଟାଣିନେଇ କହିଲା, ବାବୁଲ, ମୁଁ ଆଉ ତତେ ଛାଡ଼ିକରି ଯିବି ନ । ହାତରେ କେତେ ସବୁ ଖେଳଣା ଆଣିଥିଲା ।

କନକ—ହଉ, ତୋ ବୋଉ ଆସିବ । ତୋ ପାଇଁ କଣ୍ଢେଇ ଖେଳନା ଆଣିବ । ହେଲେ ସେ ଯଦ ଆସି ଦେଖିବ, ତୁ ରାତରେ ଏମିତ ନ ଶୋଇ ବୁଲୁଚୁ···?

ବାବୁଲ—ତା'ହେଲେ ?

କନକ—ସେ ଫେରିଯିବ ।

ବାବୁଲ—ନା, ମୁଁ ଶୋଇପଡ଼ିବ । ଚାଲ୍ କନକ ମାଉସୀ, ମତେ ଗୀତ ଶୁଣାଇ ଶୁଆଇଦବୁ ।





[ ସମୟ ସନ୍ଧ୍ୟା । ଜୟନ୍ତଙ୍କର ପୂର୍ବର ସେଇ drawing room. ବାହାରୁ ଆସିଚ ଶୁଭେନ୍ଦୁ କାହାରିକୁ ନ ଦେଖି ଡାକଚ—]

ଶୁଭେନ୍ଦୁ—ରତନା, ରତନା···! ( ଭିତରୁ ଆସିଚ ରତନା । ବାଲିଯାତ୍ରାକୁ ଯିବାପାଇଁ ଅପରୂପ ବେଶରେ ସଜେଇହୋଇଚ )

ରତନା—ଶୁଭେନ୍ଦୁବାବୁ, ନମସ୍କାର ! ହାଁ, କେତେବେଳୁ ଆସିଲେଣି ?

ଶୁଭେନ୍ଦୁ—କି, ରତନା ! ଆଜି କଣ ନୂଆବେଶ " କଣ ମନ ଖୁସିଖୁସି ଅଛୁ ତ !

ରତନା—ହଁ, ବାବୁ ! ଦେଈ ଆଜି ସଖାକୁ ସଖାକୁ ପାଞ୍ଚ ଟଙ୍କା ଯାହାଖର୍ଚ୍ଚ ଦେଇଚନ୍ତି ।

ଶୁଭେନ୍ଦୁ—ଯାତ୍ରାଖର୍ଚ୍ଚ ?

ରଚନା—ମନ୍ଦ ! ବାଲୁଯାତ୍ରା···ପୃଥିବୀ ଘୋ ଘୋ ହୋଇ ଜମୁଚି । ଗଡ଼ଗଡ଼ିଆ ଘାଟରେ କାହିଁରେ କଣ ଲୋକ ! ହଁ, ଆପଣଙ୍କର ହୋସ୍ ନାହିଁ ? ଦଧିଅନୁ ବାବୁ, ଆପଣଙ୍କ ଆଡୁ କିଛି ହବ !

ଶୁଭେନ୍ଦୁ—ଆରେ, ବକ୍‌ସିସ୍ ଦେଲା ଲୋକ ତ ମାଗିଲା ଆଗରୁ ତଡ଼େ ଦେଇ-ଦଉଚନ୍ତି । ତୁ ଆମ ଭଳିଆ ଗ୍ରେଟକାଟିଆ ଲୋକଙ୍କୁ କଣ ମାଗୁଚୁ ?

ରଚନା—ଅଜ୍ଞା, କଣ କହୁଲେ ? ଆପଣ ଗ୍ରେଟକାଟିଆ ଲୋକ ? ସତେ ଯେମିତି ଆପଣଙ୍କ କଥା ମତେ କିଛି ଜଣା ନାହିଁ ? ମୁଁ ଦେଖିଆସିଚି ଯେ, ହଁ, କେତେ ବଡ଼ ଘର, ଆଉ କେଉଟା ଗାଡ଼ି, କେତେ ଚାକରବାକର !

ଶୁଭେନ୍ଦୁ—କଣ ମିଳିବ ସେଥିରୁ ? ଗାଡ଼ି, ବାଡ଼ି, କୋଠା ଥାଇ ବି ଆମେ ଏଠି କିଛି ନୋହୁଁ । ଆଉ ତମ ଗାଁର ସେଇ ଅନାମବାବୁ, କିଛି ନ ଥାଇ ବି ସେ ଏଠି ରଜା !

ରଚନା—ନାହିଁ, ଆଜ୍ଞା; ଠାକୁରେ ଯାହାକୁ ରଜା କରିଚନ୍ତି ନା ! ଅନାମବାବୁ ପଗଡ଼ିଟା ଭିଡ଼ିଦେଲେ କଣ ସେଇଟା ମକୁଟ ହୋଇଯିବ ?

ଶୁଭେନ୍ଦୁ—ଏ କଥାଟା ତୋ ଦେଈଙ୍କି ବୁଝେଇ କହୁନୁ ?

ରଚନା—କହୁଚି ଆଜ୍ଞା, କହୁଚି । ଥରେ ନୁହେଁ, ଦୁଇ ଥର ନୁହେଁ, ହଜାର ଥର କହୁଚି ।

ଶୁଭେନ୍ଦୁ—କଣ କହୁଚୁ ?

ରଚନା—ତାଙ୍କ ଗାଁ କଥା, ତାଙ୍କ ଚଳିବା କଥା, ତାଙ୍କ ବୁଢ଼ାଆଈ କଥା, ତାଙ୍କ ବାପା ଗୋସେଇଁବାପାଙ୍କ କଥା··· ।

ଶୁଭେନ୍ଦୁ—ଆଉ କନକ ଦେଈଙ୍କ କଥା ?

ରଚନା—କହୁଚି, ଆଜ୍ଞା !

ଶୁଭେନ୍ଦୁ—ସବୁ ଜାଣିଶୁଣି, ତୋ ଦେଈ ତାଙ୍କୁ ଏମିତି···

ରଚନା- ସେଗୁଡ଼ାକ କିଛି ନୁହେଁ, ଅଙ୍କା ! ଆପଣ ଯାହା ଭାବୁଚନ୍ତି, ସେ ସବୁ କିଛି ନୁହେ । ଖାଲି ଟିକେ ଦୟା ।

ଶୁଭେନ୍ଦୁ—କଣ କହିଲୁ ? ଦୟା ? ତା'ହେଲେ ଏ ଜନ୍ମରେ ତପସ୍ୟା କର ଆର ଜନ୍ମରେ ସେଇ ଦୁଃଖୀ ଗରିବ ହବାକୁ ପଡ଼ିବ ?

ରଚନା—ହଉ, ଆର ଜନ୍ମରେ ଦୁଃଖୀ ଗରିବ ହେଲେ ଆଉ ପଛେ ମାଗିବି ନାହିଁ । ହେଲେ ଏ ଜନ୍ମରେ ଦେଇଥାନ୍ତୁ ।

ଶୁଭେନ୍ଦୁ—ତୁ ଛାଡ଼ିବୁ ନାହିଁ, ଦେଖୁଚି । ହଉ, ନେ ! ଦେଇ ତତେ କେତେ ଟଙ୍କା ଦେଇଚନ୍ତି ?

ରଚନା—କହିଲି ପରା ବାବୁ, ପାଞ୍ଚଟଙ୍କା !

ଶୁଭେନ୍ଦୁ—ହଉ, ନେ ! ଦଶ ଟଙ୍କା ଦେଲି । ଭିତରୁ ଜୟନ୍ତ ଆସିବା ଜାଣି ରଚନା ପଳେଇଯାଇଚି । ଆସିଲେ ଜୟନ୍ତ । ଦେହରେ ଗାଢ଼ ପୋଷାକ— ହାତରେ screen play .

ଜୟନ୍ତ—ଆରେ, ଶୁଭେନ୍ଦୁବାବୁ ଯେ, ବସନ୍ତୁ ! କେତେବେଳେ ଆସିଲେ ? ଏଇ ତ ଆପଣଙ୍କ screen play ଧରି ବସିଚି । ଆପଣ କହିଥିଲେ ସାତ ଦିନ ଭିତରେ ready କରିବାକୁ । ସେଇଥିପାଇଁ ଦିନରାତି ଲାଗିଚି । ଆପଣଙ୍କ ବରାଦ ଅନୁଯାୟୀ studio ready, ଆପଣଙ୍କର ଆଉ କିଛି suggestion ଅଛି, କୁହନ୍ତୁ ?

ଶୁଭେନ୍ଦୁ—ମୁଁ କହୁଥିଲି, ହିରୋଇନ୍ ଭାବରେ ଲଗ୍ନା ଦେବୀଙ୍କୁ ନ ନେଇ ଆଉ କୌଣସି ନୂଆ, new face, new talent···

ଜୟନ୍ତ—କଣ କହୁଚନ୍ତି, ଶୁଭେନ୍ଦୁବାବୁ ?

ଶୁଭେନ୍ଦୁ, କ'ଣ କରିବ, କୁହନ୍ତୁ ? ମୋର ଆଶଙ୍କା ହୁଏ, ଜୟନ୍ତବାବୁ, ଲଗ୍ନା ଦେବୀଙ୍କୁ ନେଲେ ହୁଏତ ଆମେ ଟଙ୍କାଟା ଉଠେଇପାରିବାନି । What do you say ?

ଜୟନ୍ତ—ଲଗ୍ନା ଦେବୀଙ୍କୁ ନେଲେ ଟଙ୍କାଟା ଉଠେଇପାରିବାନ ? ଓଡ଼ିଶାର film industryରେ ଏମିତି କିଏ ଅଛି ଯେ ଲଗ୍ନା ଦେବୀଙ୍କୁ substitute କରିପାରିବ ?

ଶୁଭେନ୍ଦୁ—ମୁଁ ମାନୁଚ, ଜୟନ୍ତବାବୁ । ସେ talent ଲଗ୍ନା ଦେବୀଙ୍କର ଅଛି । କିନ୍ତୁ ତାଙ୍କର ବ୍ୟକ୍ତିଗତ ଜୀବନ ନେଇ ସାଧାରଣ ଦର୍ଶକ ତାଙ୍କୁ ଯେଉଁ ଆଖିରେ ଦେଖିବାକୁ ଆରମ୍ଭ କରିଚନ୍ତି, ଆପଣ ହୁଏତ ସେ ଖବର ରଖି-ନାହାନ୍ତି ।

ଜୟନ୍ତ—ସେଇଟା ନୂଆ କଥା ନୁହେଁ । ଚଳଚ୍ଚିତ୍ରତାରକାମାନଙ୍କର ବ୍ୟକ୍ତିଗତ ଜୀବନ ନେଇ ଅନେକ ମିଠାକଡ଼ା ରଙ୍ଗୀନ ଖବର ସେମିତି ଶୁଣାଯାଏ ।

ଶୁଭେନ୍ଦୁ- ଶୁଣାଯାଏ ; ହେଲେ ଆଖିରେ ଦେଖାଯାଏନ । ଏଠି ଲଗ୍ନା ଦେବୀ କିନ୍ତୁ ସମସ୍ତଙ୍କ ଆଖି ଆଗରେ ଯେଉଁ ନଗ୍ନ ପ୍ରହସନ କରି ଚାଲିଚନ୍ତି…

ଜୟନ୍ତ—ପ୍ରହସନ ?

ଶୁଭେନ୍ଦୁ—ପ୍ରହସନ ନ କହି ଆଉ କଣ କହିବ ? କୋଉଠି ଚଳଚ୍ଚିତ୍ରତାରକା ଲଗ୍ନା ଦେବୀ, ଆଉ କୋଉଠି ମଲିମୁଣ୍ଡିଆ ଅନାମ ପରିଡ଼ା ! ତାହାରେ ଏମାନଙ୍କୁ ନେଇ ଯୋଉ scandal…!

ଜୟନ୍ତ—ଓ, ଆପଣ ଅନାମ କଥା କହୁଚନ୍ତି ? ସେଇଟା ଗୋଟାଏ ବୋକା ।

ଶୁଭେନ୍ଦୁ—ବୋକା ? ହେଲେ ଏମିତି ସରଳ ମଫସଲ ମଲିମୁଣ୍ଡିଆ ବେଶ ପିନ୍ଧି ଲୋକେ ବେଳେ ବେଳେ ବେଶ୍ ମାରାତ୍ମକ ଦେଖାଯାଇପାରନ୍ତି । ଆପଣଙ୍କର ସରଳ ବିଶ୍ୱାସ ଉପରେ ମୋର ଭୀଷଣ ସନ୍ଦେହ ହୁଏ, ଜୟନ୍ତବାବୁ !

ଜୟନ୍ତ – ଆପଣଙ୍କର ସନ୍ଦେହ ଦୂର କରିବାକୁ ଯାଇ ମୁଁ କହିବ, Mr. ପଟ୍ଟନାଏକ, ଛବିର ନାୟିକାମାନଙ୍କର mood ଜଗିବା film industryର ଗୋଟାଏ ବଡ଼ art. ବିଚିତ୍ର ସେମାନଙ୍କର ଖିଆଲ—ରହସ୍ୟମୟ ସେମାନଙ୍କର ଭଲପାଇବା । ସେଇ ଖିଆଲର ଖେଳନା ହେବାପାଇଁ ସବୁବେଳେ ଦରକାର ଅନାମ ପରି ମଣିଷ—ନିରୀହ, ନିଷ୍ପାପର, ନିର୍ବିପଦ, ଆଉ ବୋକା ।

ଏଥିରେ Producer ହିସାବରେ ଆପଣଙ୍କର ଜମା Director ହିସାବରେ ମୋର ଷଡଯନ୍ତ୍ର ହବାର ଆଶଙ୍କା ନାହିଁ ।

ଶୁଭେନ୍ଦୁ—ମୁଁ ବୁଝିଲି । ହେଲେ ଲୋକମାନେ ବୁଝିବେ ତ ?

ଜୟନ୍ତ – ସତରେ ଯତ ସେମାନେ ନ ବୁଝନ୍ତି, ତା'ହେଲେ ବାଧ୍ୟ ହୋଇ ମତେ ଲଗ୍ନାକୁ ଏହାର ଶେଷ ପରିଣତି ବୁଝାଇବାକୁ ହବ ।

ଶୁଭେନ୍ଦୁ—ମୋର କିନ୍ତୁ ମନେହୁଏ, ସେ ଆଉ ଆପଣଙ୍କ କଥା ଶୁଣିବା ଅବସ୍ଥାରେ ନାହାନ୍ତି ।

ଜୟନ୍ତ—( ରାଗି ଯାଇ ) No, it can't be ! ନା ଆଜି, I must stop it today, yes, right from now.

ଶୁଭେନ୍ଦୁ—Excuse me, Jayantababu, ମୁଁ ହୁଏତ ଆପଣଙ୍କ ମନରେ ଦୁଃଖ ଦେଇଛି ।

[ ଶୁଭେନ୍ଦୁ ଚାଲିଯାଇଛି । ଜୟନ୍ତର ଆଖି ରାଗରେ ଜଳିଉଠିଛି । କ'ଣ ଭାବି ସେ ଭିତରକୁ ଚାଲିଯାଇଛି । କିଛି ସମୟ ପରେ ଲଗ୍ନା ଓ ଅନାମ ଯାହାକୁ ଫେରିଚନ୍ତି । ଅନେକ କିଛି ଖେଳନା ଆଉ ବେଲୁନ୍ ଧରି ଆସିଚନ୍ତି ସେମାନେ । ଲଗ୍ନା ଯେମିତି ଆଜି ସବୁ କିଛି ଭୁଲିଯିବାକୁ ଚାହିଁଚି । ]

ଅନାମ—ଖାଲି ମୋ'ର ପାଇଁ ଜିଦ କରି ବାଲିଯାତ୍ରାକୁ ଗଲ, ମିଛଟାରେ ଏତେ ହଇରାଣ ହେଲ !

ଲଗ୍ନା—ହଇରାଣ ? ହଇରାଣ ପୁଣି କ'ଣ ?

ଅନାମ—ନୁହେଁ ତ ଆଉ କ'ଣ ? ସେଠି ତୁମ ପାଇଁ ଯେତେ ଗହଳି, ଯେତେ ଲୋକ ତୁମକୁ ଘେରିଗଲେ, ମୁଁ ତ ଭାବିଲି, ପୁଲିସ ଆସି ଲାଠିଚାର୍ଜ କରିବ !

ଲଗ୍ନା। ଲୋକେ ସେମିତି ହୁଅନ୍ତି। ଆଗରୁ ଏସବୁକୁ ମୁଁ ଡରୁଥିଲି। ପରେ ବୁଝିଲି, ସେମାନଙ୍କୁ ମୋର ଅଭିନୟ ଭଲ ଲାଗିଚି । ସେମାନେ ମତେ ଦେଖା କରିବାକୁ ଚାହାନ୍ତି, ମୋ ସାଙ୍ଗେ ଦି'ପଦ କଥା କହିବାକୁ ଚାହାନ୍ତି, ମତେ ଅଭିନନ୍ଦନ ଜଣେଇବାକୁ ଚାହାନ୍ତି।

ଅନାମ—ଆରେ ବାବା ! ଦେଖିବେ, କି ଦି'ପଦ କଥାବାର୍ତ୍ତା କରିବେ ବୋଲି ଏତେ ଗହଳି ! ମୁଁ ତ ଷାଢ଼ମତ ଅଣନିଶ୍ୱାସୀ ହେଇଗଲି !

ଲଗ୍ନା—ଏତେ ଗହଳି ଭିତରେ ମୁଁ କିନ୍ତୁ ତୁମ ହାତ ଛାଡ଼ିନି । ଯଦି ଛାଡ଼ିଥାଆନ୍ତି, ତମେ ଆଜି ହଜିଥିଲ !

ଅନାମ—ହଁ, ମୁଁ ଯେମିତି ପିଲା ହେଇଚି, ହଜିଯାଉଥିଲି ? ଆଉ ତୁମକୁ ଯେମିତି ମତେ ଖୋଜିବାକୁ ପଡ଼ୁଥିଲା !

ଲଗ୍ନା—Exactly ! ମତେ ଯାଇ ମାଇକ୍ ସାମନାରେ announce କରିବାକୁ ପଡ଼ିଥାନ୍ତା ଯେ, ଅନାମ ବୋଲି ଗୋଟିଏ ଗ୍ରେଟ ପିଲା ହଜିଯାଇଚି, ଦେଖିବାକୁ ଗୋରା, ଉଚ୍ଚତା ୫ଫୁଟ, ପିନ୍ଧିଚି ଧୋତି ସାର୍ଟ, କୋର୍ଟ; ଯଦି କେହି ତାଙ୍କୁ ପାଇଥାନ୍ତି, ଦୟାକରି ଏଇଠି ଆଣି ଜମା ଦେଇଯିବେ ।

ଅନାମ—ହଉ ହେଲା, ତୁମେ ମାଇକରେ announce କରୁଥାଅ; ମୁଁ ଯାଉଚି, ସେ ଗ୍ରେଟ ପିଲାଟିକୁ ଖୋଜିଆଣେ ।

( ଅଭିମାନ କରି ବାହାରକୁ ଚାଲିଗଲା )

ଲଗ୍ନା—( ହସିହସି ) ଅନାମ ! ଅନାମ ! ଆରେ, ତମ ହେଲୁନ ? ଓଃ, ଅପମାନ ହେଇଗଲା ପରି ? ହଉ, ତମେ ଗ୍ରେଟ ପିଲା ନୁହଁ । ଆଉ ତମକୁ ଗ୍ରେଟ ପିଲା କହିବି ନାହିଁ । ତମେ ଖୁବ୍ ବଡ଼ ପିଲା ହେଇଯାଇଚ ।

( ଲଗ୍ନା ପେଁକାଳୀ ବଜଉଥିଲାବେଳେ ଜୟନ୍ତ ଆସିଚି ଭିତରକୁ । )

ଜୟନ୍ତ—ଲଗ୍ନା, ଏ ସବୁ କ'ଣ ଚାଲିଚି ?

ଲଗ୍ନା—କାହିଁ ? କ'ଣ ? ( ପେଁକାଲି ବକେଇଛ )

**ଜୟନ୍ତ**—ଲଗ୍ନା, ଏ ସବୁ କ ପିଲାଳିଆମି ଗ୍ଭଲିଛ ?

ଲଗ୍ନା—ଅପଣ ବାଲ୍ୟଯାତ୍ରା ଦେଖି ଯାଆନ୍ତୁ ନା, ଆପଣ ବ ମୋ ଭଳି ପିଲା ହୋଇଯିବେ—( ବେଲୁନ୍ ଫୁଙ୍କିଲା )

**ଜୟନ୍ତ**—ଲଗ୍ନା !!

ଲଗ୍ନା—( ବେଲୁନ୍ ଫାଟିଯାଇଛ ) ସତରେ, ଚମତ୍କାର ଲାଗିଲା ! ଅନ୍ତତଃ କିଛିକ୍ଷଣ ପାଇଁ ଭୁଲିଗଲି, ମୁଁ ଜଣେ ନାୟିକା, ଚରାଭିନେତ୍ରୀ ।

**ଜୟନ୍ତ**—କିନ୍ତୁ ଇଆଡ଼େ କେତେଜଣ financier ଆସି ଫେରିଗଲେ, ଜାଣିଚ ? ( ବେଲୁନ ଫୁଙ୍କୁଥିଲା ଲଗ୍ନା )

ଲଗ୍ନା—ଆଃ, ଯାନ୍ତୁ ନା ! ସବୁବେଳେ financier, ଡଣ୍ଟ୍ରାକ୍ଟର, ସୁଟିଂ, ଡାଇଲଗ୍, ମେକପ୍ । Oh, I am fed up !

**ଜୟନ୍ତ**—ଲଗ୍ନା ! Are you in sense ? ଫାଇନାନ୍ସିଅରମାନେ ବିରକ୍ତ ହୋଇ ଗ୍ଭଲିଯିବା କଥାକୁ ତମେ ଖୁବ ସହଜ ଭାବରେ ଗ୍ରହଣ କରିନେଇଚ, ମୁଁ ଦେଖୁଚ !

ଲଗ୍ନା—Excuse me, ଜୟନ୍ତବାବୁ ! ଆଜି ମତେ ଅଧିକ bore ନ କଲେ ଚଳନ୍ତା ନାହିଁ ? Please···

ଜୟନ୍ତ—Bore ? କ'ଣ ଭାବିଚ ତମେ ? ତମ ପାଇଁ ଦିନରାତି ଧାଇଁଧାଇଁ ବୁଲି ମୁଁ financier ଯୋଗାଡ଼ କରିବି, ଆଉ ତମେ ବାଲ୍ୟଯାତ୍ରାକୁ ବେଲୁନ୍ ଫୁଙ୍କି ଫୁଙ୍କି ଫେରିବ ?

ଲଗ୍ନା—ମୁଁ ତ ଆପଣଙ୍କୁ କହି ନ ଥିଲି ଏମିତି ସବୁ Financier ଯୋଗାଡ଼ କରିବାକୁ, ଯୋଉମାନେ ମତେ ଆସି ଅସମୟରେ ବିରକ୍ତ କରିବେ ?

ଜୟନ୍ତ—ତୁମକୁ ସେମାନେ ବିରକ୍ତ କରୁଚନ୍ତି ?

ଲଗ୍ନା—ହଁ, ସେମାନେ ଜାଣିଶୁଣି ଆପଣ ଘରେ ନ ଥିଲାବେଳେ ମୋ ସାଙ୍ଗରେ ଦେଖା କରିବାକୁ ଆସୁଚନ୍ତି, which I don't like ।

ଜୟନ୍ତ—କିନ୍ତୁ ଏସବୁ ତୁମକୁ ସହିବାକୁ ପଡ଼ିବ, ଲଗ୍ନା ! ଫିଲ୍ମ୍ ବିଜିନେସ୍‌ରେ financierମାନେ ହିଁ ଚଳନ୍ତି ସବୁ । You have to please them. ସେଥିରେ ଲାଭ ତମର ।

ଲଗ୍ନା - କିନ୍ତୁ ତା ବୋଲି ଇମିତି ନୀଚ ଭାବରେ ମୁଁ ସେମାନଙ୍କୁ oblige କରିପାରିବି ନାହିଁ । No, that can't be.

ଜୟନ୍ତ—ଆଶ୍ଚର୍ଯ୍ୟ ଦୁଃସାହସ ତମର ! କୌଣସି ଚିତ୍ରନାୟିକା କୌଣସି financierକୁ ଇମିତି କହିବା ମୁଁ ଦେଖିନି ।

ଲଗ୍ନା—ଚିତ୍ରନାୟିକା ହେଲି ବୋଲି ଆପଣ ଆଉ ମୋ ଭିତରେ କଣ ଏଇ ଅଣ୍ଡରଷ୍ଟାଣ୍ଡିଂ ଥିଲା ଯେ ମନଇଚ୍ଛା ଆପଣ ମତେ ଯାହାକୁ ଇଚ୍ଛା ତାକୁ ବିକିଦେଇପାରିବେ ?

ଜୟନ୍ତ—ହଁ, ପାରିବି । Fiim businessଟା ଏଇଆ ।

ଲଗ୍ନା—ଜୟନ୍ତବାବୁ ! ଆପଣ ମତେ କଁଣ ଭାବିଚନ୍ତି ?

ଜୟନ୍ତ—କ'ଣ ଭାବିଚି ? ତମେ ସେଇ ଆମ୍ରପାଳୀ, ଯୋଉ ଭୂମିକାରେ ତମେ ଅଭିନୟ କରିଚ ।

ଲଗ୍ନା—ଆମ୍ରପାଳୀ ?

ଜୟନ୍ତ—ହଁ, ତମ ଭଳି ପ୍ରତ୍ୟେକ ଝିଅଙ୍କୁ ନେଇ ମୋର ଚୁକ୍ତା କରେଇଦବାକୁ ଇଚ୍ଛା ହୁଏ ମଗଧ ରାଜାର ସେଇ ରାଜଦରବାରରେ, ଯୋଉଠି ନାଗ୍ରୀ ବଧୂ ନୁହେଁ—ନଗରବଧୂ ।

ଲଗ୍ନା—ନା, ନା, ନା ! ଆମ୍ରପାଳୀ ପ୍ରତିବାଦ କରିପାରିଲା ନାହିଁ; ମୁଁ କିନ୍ତୁ ପ୍ରତିବାଦ କରୁଚି । ମୁଁ ଆମ୍ରପାଳୀ ନୁହେଁ ; ମୁଁ ଲଗ୍ନା । ମୋ କଥା ଆପଣଙ୍କୁ ଶୁଣିବାକୁ ହବ ! ( କାନ୍ଦିଉଠିଚି )

ଜୟନ୍ତ—ଯଦି ନ ଶୁଣେ ?

ଲଗ୍ନା—ତା ମାନେ, କଣ ଜୋର କରି ଆପଣ ମତେ ଚିରଦିନ ଆତ୍ମୀୟାକରି ରଖିବେ ?

ଜୟନ୍ତ—ଛବିର କଣ୍ଟ୍ରାକ୍ଟ ସାଇନ୍ କରିସାରିବା ପରେ ଯେକୌଣସି ଶିଳ୍ପୀ ମୋ ହାତର ଖେଳନା । ଇଚ୍ଛା କଲେ ମୁଁ ତୁମକୁ ଆଜୀବନ ବନ୍ଦୀ କରି ରଖିପାରେଁ । ଆଉ ତମେ ଯଦି ଜୋର କରି ଆଇନ କାନୁନର ଆଶ୍ରୟ ନିଅ, ତା'ହେଲେ I will spoil you.

ଲଗ୍ନା—ମାନେ ?

ଜୟନ୍ତ—ମାନେ, ଯୋଉ ରୂପ ନେଇ ତୁମର ଏତେ ଗର୍ବ, ସେଇଟା ନଷ୍ଟ କରିଦବାକୁ ମତେ ଗୋଟେ ମିନିଟ ବି ଲାଗିବନି । Do you want to see that ?

[ ଜୟନ୍ତ କକ୍ଷର ଆଲୋକ ଲିଭାଇଦେଇଛି । ଅନ୍ଧକାରରେ ଭୟଭୀତ ହୋଇ ଲଗ୍ନା ଚିତ୍କାର କରିଉଠିଲା ]

ଲଗ୍ନା—ଆଃ, ଜୟନ୍ତବାବୁ !

ଜୟନ୍ତ—ପଳେଇଯିବାର ଚେଷ୍ଟା କରନା । ଯୋଉଠି ଅଛ, ସେଇଠି, ଅନ୍ଧକାରରେ ଠିକ୍ ସେମିତି ଛିଡ଼ାହୋଇ ରହ । ( ଲାଇଟରକୁ ଜାଳି ) ଜୟନ୍ତ ଯେତେବେଳେ ହିଂସ୍ର ହୋଇଉଠେ, ବଣରପଶୁ ହାରମାନିନିଏ ···ହାଃ, ହାଃ, ହାଃ !

[ ଜୟନ୍ତ ଲଗ୍ନାର ମୁହଁ ପାଖକୁ ଲାଇଟର ଆଣିଛି । ମୁହଁ ପୋଡ଼ିଯିବା ଭୟରେ ଚିତ୍କାର କରି ସୋଫା ଉପରେ ପଡ଼ିଯାଇଛି ଲଗ୍ନା । ଜୟନ୍ତ କେତେବେଳେ ବାହାରକୁ ଯାଇଛି, ସେ ଜାଣେନା । କିଛି ସମୟ ପରେ ଭିତରକୁ ଅତି ସନ୍ତର୍ପଣରେ ଆସିଛି ସୁମିତା । ଆସି ଘରର ଲାଇଟ୍ ଅନ୍ କରିଛି । ଲଗ୍ନା ନିକଟକୁ ଆସି ତା' ଦେହରେ ହାତ ଦେଇ ଡାକିଛି ]

ସୁମିତା—ଲଗ୍ନା !

ଲଗ୍ନା—କିଏ ? ( ଚମକିପଡି ଉଠିଯାଇଛି )

ସୁମିତା—ଏ ଦୁଃସାହସ ଆଉ କେବେ କରିବନି ।

ଲଗ୍ନା—ଦୁଃସାହସ ?

ସୁମିତା—ହଁ, ପଶାଖେଳରେ ଜମ୍ବୁଦ୍ୱୀପ ହେଉଛି ଶକୁନି । ତା ସାଙ୍ଗରେ ବାଜି ରଖି ତୁମେ ଖେଳିବସୁଛ ? ହାରିଯିବ ।

ଲଗ୍ନା—କଣ ତୁମେ କହୁଛ, ମତେ ଟିକେ ବୁଝେଇ କୁହ ।

ସୁମିତା—ତମରି ଭଳି ମୋର ବି ଦିନେ ଦେହ ଥିଲା, ରୂପ ଥିଲା, ସୌନ୍ଦର୍ଯ୍ୟ ଥିଲା । ଲୋକେ ମୋର ଛବି ଦେଖି ଦେଖି ପାଗଳ ହୋଇଯାଉଥିଲେ । ମୋର ଟଙ୍କା ଥିଲା, ଗାଡ଼ି ଥିଲା, ଘରକର ପୂଜାରି ଦରୁଆନ ସମସ୍ତେ ଥିଲେ । ହେଲେ ଯୋଉ ଦିନ ମୁଁ ତୁମରି ଭଳି ବିଦ୍ରୋହ କରିବସିଲି, ସେଇଦିନ ମୁହୂର୍ତ୍ତକ ମଧ୍ୟରେ ମୁଁ ସବୁକିଛୁ ହରାଇ ବସିଲି । ଏ ମୂର୍ତ୍ତି ବଦଳିଗଲା, ଏ ମସୀଷ ବଦଳିଗଲା । ସେ ଚେଷ୍ଟା ତୁମେ କରନା, ଲଗ୍ନା, ସେ ଚେଷ୍ଟା ତୁମେ କରନା ! ସେ ଦୁଃସାହସ ତୁମେ କରନା । ଯୋଉ ଦିନ ମୁଁ ତୁମରି ଭଳି ବାଜି ରଖି ଖେଳିବାକୁ ବସିଲି, ସେଇ ଦିନ ମୋର ସବୁ ଶେଷ ହୋଇଗଲା ।

ଲଗ୍ନା—ତା'ହେଲେ ନିର୍ଜୀବ କାଚ କଣ୍ଢେଇ ହୋଇ ମତେ କ'ଣ ସବୁ ସହିବାକୁ ପଡିବ ?

ସୁମିତା—ହଁ, ସବୁ ସହିବାକୁ ପଡ଼ିବ । ଇମିତ ସହି ସହି ଶିଳ୍ପୀ ଦିନେ ନିର୍ଜୀବ କାଚ କଣ୍ଢେଇ ହୋଇଯାଏ । ମନର ସବୁ ଅନୁଭୂତି, ସବୁ ରୋମାଞ୍ଚ, ସବୁ ଶିହରଣ ସ୍ୱର୍ଗିଲୁଳି ଏକାକାର ହୋଇଯାଏ । ଆଲୋକରେ ସେ ସମସ୍ତଙ୍କ ଆଗରେ ହସେ । ହେଲେ ତା ମନ ଗହ୍ୱରରେ ଅଶ୍ରୁର ଆବେଗ ନେଇ ଯୋଉ ଅନ୍ଧକାରର ପୂରବୀ, ତା କିଏ ଶୁଣେ, କିଏ ବୁଝେ ? ନା, ନା, କେହି ନୁହେଁ···କେହି ନୁହେଁ ।

( କାନ୍ଦିଉଠି ଲଗ୍ନା ଲୋଟିଯାଇଛି ସୁମିତା କୋଳରେ । ସୁମିତାର ଆଖିରେ ଲୁହ । ସେ ଲଗ୍ନାକୁ ସାନ୍ତ୍ୱନା ଦେବାବେଳେ ମଞ୍ଚ ଅନ୍ଧକାର ହେଲା । )



## ତୃତୀୟ ଦୃଶ୍ୟ

[ Flatର ସେଇ କକ୍ଷ । ବାହାରୁ ଆସିଛନ୍ତି ଶୁଭେନ୍ଦୁ ଓ ସଞ୍ଜୀବ । ସଞ୍ଜୀବ ଉତ୍ଫୁଲ୍ଲ ]

ଶୁଭେନ୍ଦୁ—ବାହାରୁ କିଛି ନ କହି ଜୟନ୍ତ କାଲି ଫ୍ଲାଟ୍ ଛାଡ଼ି ଚାଲିଯିବ । ଖବରଟା ତା' ହେଲେ ତୁମେ ପାଇଚ ?

ସଞ୍ଜୀବ—ପାଇଚ, ମାନେ ? ଠିକ୍ ସମୟରେ ପାଇଚ । 'ଅନାମିକା ଚାପ୍' ଛବିଟାରେ ମୋର ପୁରା ବଜେଟ୍ କେତେ, ଜାଣିଚନ୍ତି ? Social ବନ୍ଧୁ; ବଜେଟ୍ ପୁରା ଦୁଇଲକ୍ଷ ଟଙ୍କାରୁ ବି exceed କରିଗଲା ।

ଶୁଭେନ୍ଦୁ—ଯା' ହେଉ, ଛବିଟା ରିଲିଜ୍ ହେଇଗଲା ।

ସଞ୍ଜୀବ—ହଁ, ସେଇଠୁ ଧନ୍ୟ ହେଇଗଲି !

ଶୁଭେନ୍ଦୁ—ଆଉ ଧନ୍ୟ ହେଲି ନାହିଁ ? ଲମ୍ବା ଦେଖି ଭଲ ହିରୋଇନ୍ ନେଇ role କଲ ! ଲୋକେ ଚହଲି ଲେ, ଜାଣିଲେ···!

ସଞ୍ଜୀବ—ଏତିକି ଜାଣିଲି ଯେ, ଛବିଟା ଆରମ୍ଭ କଲାବେଳେ ମୁଁ ଗାଡ଼ି ଚଢ଼ି ବୁଲୁଥିଲି, ଆଉ ଏବେ ଛବିଟା ରିଲିଜ୍ ହେଲାବେଳକୁ ଖାଲି ପାଦରେ ଛିଣ୍ଡା ଚଟି ଘୋଷାଡ଼ି ଘୋଷାଡ଼ି, ରଫ୍ୟୁଜି କ୍ୟାଣ୍ଟିନ୍‌ରୁ ଚାଲୁ ଚା ପିଇ dinner, lunch ସବୁ କିଛି ମ୍ୟାନେଜ୍ କରିନେଉଚି ।

ଶୁଭେନ୍ଦୁ—ହଉ, ଯା' ହଉ, Producer ହବାର ତ ଗୋଟାଏ experience ହେଇଗଲା ! ଏବେ ଆସନ୍ତା ଛବିରେ ହୁସିଆର ହେଇଯିବ ।

ସଞ୍ଜୀବ—ଖୁବ୍ ହେଇଗଲା । ଏଣିକି ବରଂ କୁଣ୍ଡା କାରବାର କରିବି; ଆଉ ମତେ ଛବି କାରବାର କଥା କୁହନ୍ତୁ ନାହିଁ । ମା କଟକ ଚଣ୍ଡୀଙ୍କ ଦୟାରୁ ଖାଲି ଟଙ୍କାଟା ମୁଁ ଫେରିପାଏ !!

ଶୁଭେନ୍ଦୁ—ଏଠି ଜଗିବସିଲେ କଣ ଟଙ୍କା ମିଳିବ ? ଜୟନ୍ତ ପଗ୍ ଚଢାକଟା । ମାଲ ମସଲ୍ ଯାହା ଘରେ ଥିଲ ସବୁ ଖଲାସ କରିସାରିଲଣି ।

ସଞ୍ଜୀବ—ସତେ ନା କଣ ?

ଶୁଭେନ୍ଦୁ—ସେ ବମ୍ବେ ଯାଉଛି । ଏଣିକି ବୁଦ୍ଧ ଛଳରେ ହାତ ଦବ । Plane ticket book ହେଇସାରିଛି ।

ସଞ୍ଜୀବ—ନା, ନା, ସେ ସବୁ ହେଇପାରିବନି । ମୁଁ ତାକୁ ଗ୍ରୁଣ୍ଡଦେବନି ।

ଶୁଭେନ୍ଦୁ—ଏଠି ପାଟି କରି ଲାଭ ନାହିଁ । ଯଦି ପାରିବ, ସେ ଅଦ୍ୱୈତବାବୁଙ୍କୁ ଧରିବାର ବ୍ୟବସ୍ଥା କର ।

ସଞ୍ଜୀବ—କାହିଁକି ?

ଶୁଭେନ୍ଦୁ—( ଭିତରକୁ ଦେଖେଇଦେଇ ) ତା'ର ପାଖରେ ଜୟନ୍ତର ସବୁ ଟଙ୍କା ପଇସା—Even the plane ticket !

ସଞ୍ଜୀବ—ମୁଁ ବୁଝିଲି । ( ଯାଉ ଯାଉ ହଠାତ୍ କଣ ଭାବି ଫେରିପଡ଼ି ) ତା ହେଲେ ଅଦ୍ୱୈତ କୋଉଠି ? ଆପଣ ଏଠି ଜଗି ବସିଚନ୍ତି କାହିଁକି ?

ଶୁଭେନ୍ଦୁ—ମୋର ଲକ୍ଷ୍ୟ ଟଙ୍କା ନୁହେଁ; ଲଗ୍ନା ।

ସଞ୍ଜୀବ—O. K. Wish you good luck, ମୁଁ ଆସୁଚି ।

( ବାହାରୁ ଆସିଚନ୍ତି ଗୁରୁଚରଣ—ସାଙ୍ଗରେ କନକ )

ଗୁରୁଚରଣ—ରତନା, ରତନା !

ଶୁଭେନ୍ଦୁ—ଏଠି ରତନା ଫତନା କେହି ନାହାନ୍ତି ।

ଗୁରୁଚରଣ—ଆଜ୍ଞା, ଲୋକେ କହିଲେ ସେ ଏଇଠି ରହୁଛି ।

ଶୁଭେନ୍ଦୁ—ତୁମେ କିଏ ?

ଗୁରୁଚରଣ—ଆଜ୍ଞା ମୁଁ ରତନା ଗାଁର ଲୋକ ।

ଶୁଭେନ୍ଦୁ—ଆଉ ଏ ଝିଅଟି ?

ଗୁରୁଚରଣ—ସିଏ କନକ ।

ଶୁଭେନ୍ଦୁ—ତା ହେଲେ ତୁମେ ନିଶ୍ଚୟ ଅନାମକୁ ଜାଣିଚ ?

ଗୁରୁଚରଣ—ଆଜ୍ଞା, ମୁଁ ତା'ର ବାପ ଗୁରୁଚରଣ ପଣ୍ଡା । ଆପଣ ଅନାମକୁ ଜାଣନ୍ତି ?

ଶୁଭେନ୍ଦୁ—ଓ, ତୁମେ ତା'ହେଲେ ତା'ର ବାପ !!! ଆଉ ସେ ତୁମର ବାଗ୍‌ଦତ୍ତା ବୋହୂ ?

ଗୁରୁଚରଣ—ଆଜ୍ଞା, ଅନାମକୁ···ଅନାମକୁ ଆପଣ ଜାଣନ୍ତି ?

ଶୁଭେନ୍ଦୁ—ଜାଣିବିନି ? ସେ କଣ ଏଠି ଛୋଟିଆ ଲୋକ ହୋଇ ରହିଚ ?

ଗୁରୁଚରଣ—ଆଜ୍ଞା, କି କଥା କହୁଚନ୍ତି ?

ଶୁଭେନ୍ଦୁ—ତୁମେ କିଛି ଜାଣିନା ? ସେ ଏଠି ଯୋଉ Circle ରେ ଘୂରି ବୁଲୁଚ ନା । ଆମ ଭଳିଆ ଲୋକ ସେଠି ପହଞ୍ଚିବା ମୁସ୍କିଲ୍ ।

ଗୁରୁଚରଣ—ହଁ ଆଜ୍ଞା, ସେ କି ଏଠି ବାବନା ଭୂତ ପରି ଘୂରି ବୁଲୁଚ । ସିଆଡ଼େ ତା'ର କଥା ଶୁଣି ଶୁଣି ଆମ ମୁଣ୍ଡ ଘୂରିଗଲାଣି ।

ଶୁଭେନ୍ଦୁ—ମିଛରେ ମୁଣ୍ଡ ଘୂରେଇବା କିଛି ଦରକାର ନାହିଁ । ଏଥର ଖାଲି ବ୍ୟବସ୍ଥା କର ।

ଗୁରୁଚରଣ—ଆଜ୍ଞା, ସେ ସବୁ ବ୍ୟବସ୍ଥା କଣ ଆଜଯାଏ ମୁଁ ବାକି ରଖିଚି ? ସବୁ ଠିକ୍ ହୋଇଯାଇଚି, ଆଜ୍ଞା ! ଅନାମବୋଉଟା ସିନା ଆଉ ପୁଅକୁ ଭୁଲିଗଲା । ହେଲେ କନକବୋଉ ତ ମରିଯାଇନି ! ପିଲାଟି ଦିନରୁ ଦର୍ପଣିଯାକ ତ ବଢ଼ିଲା । ତମ୍ବା ତୁଳସୀ ଧରି ସତ୍ୟ କରିକରି ହୋଇଥିଲେ ଯେ, ସେ ସତ୍ୟ ପାଳିବାକୁ ମୁଁ ହାଡ଼ ଦ'ଣ୍ଡ ଧରି ବସିଚି ।

ଶୁଭେନ୍ଦୁ—ସେ ସତ୍ୟଗୁଡ଼ାକ କିନ୍ତୁ ଏ କଳିକାଳରେ ମିଥ୍ୟା ହୋଇଗଲାଣି । ସେ ସବୁ ତୁମେ ଭୁଲିଯାଅ, ବୁଢ଼ା ! ଆଉ ଏ କନକ ଝିଅଟି ବଡ଼ ଧୃତରାଗିଣୀ ।

ଗୁରୁଚରଣ—( ଆଶ୍ଚର୍ଯ୍ୟରେ ) ଆଜ୍ଞା, ଏ କି କଥା କହୁଚନ୍ତି ଆଜ୍ଞା ?

ଶୁଭେନ୍ଦୁ—ବୁଝିଲ ଗୁରୁଚରଣ, ସେ କନକଟିକୁ ବୋହୂ କରିବା ଆଶା ଛାଡ଼ । ଏଠି ତମ ଅନାମ ପାଇଁ ଦାମୀ ବୋହୂ ଯୋଗାଡ଼ ସରିଲାଣି !

( କନକ କାନ୍ଦିଉଠିଲା )

ଗୁରୁଚରଣ—ଆଜ୍ଞା, କ'ଣ କହିଲେ ? ଦାମିକା ବୋହୂ ? ( ଯେମିତି ବିଶ୍ବାସ କରି ପାରୁ ନ ଥିଲା )

ଶୁଭେନ୍ଦୁ—ହଁ, ଖୁବ୍ ଖୁବ୍ ଅନାମ ଲକ୍ଷପତି ହେଇଯିବାର ବ୍ୟବସ୍ଥା କରିଛି ।

ଗୁରୁଚରଣ—କଏ ବ୍ୟବସ୍ଥା କରିଛି ?

ଶୁଭେନ୍ଦୁ—ଅନାମ ନିଜେ । ତୁମେ କ'ଣ ଗାଁରେ ରହିଲ ବୋଲି ଏଠିକାର କିଛି ଖବର ରଖ ନା ?

ଗୁରୁଚରଣ—ଆଜ୍ଞା, ମତେ ଏ ଖବର କେହି ଦେଇନାହାନ୍ତି !

ଶୁଭେନ୍ଦୁ—ଏ ସବୁ ଖବର କ'ଣ ପିଲାମାନେ ଆଜିକାଲି ବାପମାନଙ୍କୁ ଦଉଛନ୍ତି ? ଦେଶଟା ଏତେ ଆଗେଇନି । ହେଲା ଏବେ, ମୁଁ ତୁମକୁ ପ୍ରଥମେ ଖବରଟା ଦେଲି । କିନ୍ତୁ ତୁମେ ତ ଖୁସି ହେଲାଭଳି ଜଣାପଡ଼ୁନ !

ଗୁରୁଚରଣ—ଆଜ୍ଞା, ଖୁସି ହେବି କେମିତି ? ତା ବୋଉ ଯୋଉ କଥା ଦେଇଥିଲା, ତା ଯଦି ମୁଁ ରଖି ପାରିଲିନି, ତା'ହେଲେ କଣ ପାଇଁ ମୁଁ ଖୁସି ହେବି, ବାବୁ ? ( ଆଖିରେ ଲୁହ ) ପୁଅ ଜନ୍ମ କରି ମୋ କପାଳରେ ଶେଷରେ କଣ ଏଇକଥା ଦେଖିବାକୁ ଥିଲା ? ଗାଁ ଲୋକେ ମତେ କଣ କହିବେ ?

କନକ—ମଉସା·················! ( କାନ୍ଦିଉଠିଛି )

ଶୁଭେନ୍ଦୁ—ଗାଁ ଲୋକେ ଭୋଜିଭାତ ଖାଇ ଖୁସି ହେଇଯିବେ । ଆଉ···ଆଉ କନକ, ସିଏ କଣ ଆଉ କୋଉଠିକି ଉଠିଯିବ ନି ?

ଗୁରୁଚରଣ—ନା, ବାବୁ, ନା ସେ କଥା କୁହନି ! କନକ ଆଉ କାହା ଘରର ବୋହୂ ହେଇପାରିବନି । ସେ ମୋ ବୋହୂ । ଅନାମ ବେଇମାନ ହେଲେ ହେଲା । ହେଲେ କନକ ମୋ ପାଖରେ ଯେମିତି ରହିଛି ସିମିତି ରହିବ ।

ଶୁଭେନ୍ଦୁ—ତା' ହେଲେ ତୁମେ ଏଠି ବାହାଘରରେ ଯୋଗ ଦବନି ?

ଗୁରୁଚରଣ—ନା, ମୁଁ ଫେରିଯାଉଛି । ସେ ସୁଖରେ ରହୁ, ସେ ଶାନ୍ତିରେ ରହୁ । ସେ ବଡ଼ପଣିଆ ସବୁଦିନେ ରହିବନି, ବାବୁ ; ସେ ସୁଖ ସବୁଦିନେ ରହିବନି !

କନକ—ନା, ମଉସା, ତୁମେ ତାଙ୍କ କଲ୍ୟାଣ କର, ସେ ଭଲରେ ରୁହନ୍ତୁ, ସୁଖରେ ରୁହନ୍ତୁ । ଆମେ ଗାଁକୁ ଫେରିଯିବା ।

ଗୁରୁଚରଣ—ହଁ, ମା ! ଆମେ ଫେରିଯିବା । ହେଲେ ମୁଁ କହି ଦେଇ ଯାଉଛି, ବାବୁ, ଲକ୍ଷ୍ମୀ ଘରର ପୁଅ ସେ । ହଡ଼ମାଟି ତାକୁ ଡାକୁଛି । ଆଜି କନକର ଶଙ୍ଖା ସିନ୍ଦୁର ଯଦି ସତ ହୋଇଥିବ, ସେ ତାକୁ ଟାଣିନବ ! ତା ବୋଉର ସତ୍ୟ ଯଦି ଧରମ ଦେଖୁଥିବ, ତା' ହେଲେ ମୁଁ କହୁଛି, ସେ ଫେରିଯିବ, ବାବୁ ! ସେ ନିଶ୍ଚୟ ଫେରିଯିବ । ଚାଲ୍ ମା !

ଶୁଭେନ୍ଦୁ—ଆରେ ! ( ଗୁରୁଚରଣ କାନ୍ଦି କାନ୍ଦି ଚାଲିଯାଉଛି, ମନ ଆନନ୍ଦରେ ଫୁଲିଉଠିଛି; ବାହାରକୁ ଯାଇଛି )

ଶୁଭେନ୍ଦୁ—ଗୁରୁଚରଣ ! ଶୁଣିଯାଅ···ଶୁଣିଯାଅ ! ହାଃ ହାଃ ହାଃ !



## ପଞ୍ଚମ ଦୃଶ୍ୟ

[ ଜୟନ୍ତର Flatର ସେଇ Drawing room ସମୟ ସନ୍ଧ୍ୟା । ଜୟନ୍ତର ବିଜନେସ fail ମାରିବା ଯୋଗେ ଘରର ଶିରୀ ତୁଟିଯାଇଛି । ଲଗ୍ନା ଡାଲକୋନି ଉପରେ ଠିଆ ହୋଇ ଶୂନ୍ୟ ଆକାଶକୁ ଚାହିଁ ରହିଥିଲା । ଭିତରୁ ଆସିଛି ରଚନା । ମନରେ ତାର ଦୁଃଖ ]

ରଚନା—ଦେଈ··· !

ଲଗ୍ନା—କଅଣ ? କିଛି କହିବୁ ?

ରଚନା—ନା, ଆଉ କହିବି କଣ, ଦେଈ ? ତେବେ ଗୋଟାଏ କଥା ପଚାରିବାକୁ ଆସିଥିଲି, ଦେଈ !

ଲଗ୍ନା—କଣ ?

ରଚନା—ଆମକୁ କୁଆଡ଼େ ଏ ଘର ଛାଡ଼ିବାକୁ ହବ ?

ଲଗ୍ନା—ହଁ ।

ରଚନା—ତା'ହେଲେ ଲୋକେ ଯାହାସବୁ କହୁଚନ୍ତି, ସତ ? କାହିଁକି, ଦେଈ ?

ଲଗ୍ନା—ସେକଥା ଜୟନ୍ତବାବୁଙ୍କୁ ପଚାରବୁ ।

ରଚନା— ତାଙ୍କୁ ପଚାରିବାକୁ ବେଳ କାହିଁ । ଏଇ କେଇଦିନ ହେଲା ତାଙ୍କର କଣ ହେଇଛି ଯେ, ଖାଲି, ଚାଲିବେଳେ କହୁଯାଉଚନ୍ତି ଯଦି କିଏ ଆସେ, କହିବୁ ·····

ଲଗ୍ନା- ମୁଁ ଘରେ ନାହିଁ, ପରେ କେତେବେଳେ ଆସିବେ ।

ରତନା—ହଁ ଦେଈ, ସେମିତି କହ ମୁଁ କେତେ ଲୋକଙ୍କୁ ଫେରେଇଲଣି, କ'ଣ କହିବି ? ସେଇ ମାରୁଆଡ଼ିବାବୁ, ଶୁଭେନ୍ଦୁବାବୁ, ଆଉ କେତେ କଏ ଚିହ୍ନା ଅଚିହ୍ନା ବାବୁ ଦିନରେ ଦଶ ଥର ଆସି ଫେରିଯାଉଚନ୍ତି । ଖାଲି କ'ଣ ସେତିକି ? Studioରେ ଫଟଉଠାବାବୁ, ଲାଇଟିବାବୁ, ଗୀତବାବୁ, ନାଚବାବୁ ଆସି ଯୋଉ ପାଟିଗୁଣ୍ଡ କରି ଯାଉଚନ୍ତି······ସେମାନଙ୍କର କୁଆଡ଼େ କାହିଁରେ କଣ ଟଙ୍କା ବାକି ପଡ଼ିଚି । ଏସବୁ କଣ ସତ କଥା, ଦେଈ ?

ଲଗ୍ନା—ହଁ, ସତ ।

ରତନା—କାହିଁକି, ଦେଈ ? ଏତେସବୁ ଟଙ୍କା ତାଙ୍କର କାହିଁକି ବାକି ରହିଲା ?

ଲଗ୍ନା—ଜୟନ୍ତବାବୁଙ୍କର business faii ମାରିଚି ।

ରତନା—ଦେଈ, ପରୀକ୍ଷାରେ ସିନା ପାସ୍ ଫେଲ୍ ! ହେଲେ ବେପାର ବଣିଜରେ ପାସ୍ ଫେଲ୍ କଣ ?

ଲଗ୍ନା— ତୁ ସେସବୁ କଥା ବୁଝିପାରିବୁ ନାହିଁ । ଯା, ଜିନିଷପତ୍ର ଯୋଉଠି ଯେମିତି ସଜଡ଼ାସଜଡ଼ି କରିବା କଥା, କରିପକା ।

ରତନା—ହଉ, ଦେଈ, ଯାହା ହବାର ହଉ, ଯୋଉଠିକି ଯାଅ, ହେଲେ ମତେ ଯେମିତି ପାଖରୁ ତଡ଼ି ନ ଦିଅ ! ( ଆଖିରୁ ଲୁହ ପୋଛୁ ଭିତରକୁ ଯାଇଚି ରତନା । ଜୟନ୍ତ ଆସିଚି ବାହାରୁ । ପୋଷାକପତ୍ର ବିପର୍ଯ୍ୟସ୍ତ; କିନ୍ତୁ ସେ ଖୁସି ଥିଲାପରି ଜଣାଯାଉଥିଲା । )

ଜୟନ୍ତ—ସବୁ ଠିକ୍ କରିଦେଇ ଆସିଲି, ଲଗ୍ନା !

ଲଗ୍ନା—କ'ଣ ଠିକ୍ କରିଦେଇ ଆସିଲ ? ଆଉ କୋଉଠି ନୂଆ flat ?

ଜୟନ୍ତ—ନା, shooting date·

ଲଗ୍ନା—କିନ୍ତୁ କାହାକୁ ନେଇ shooting କରିବ ? Financierମାନଙ୍କୁ ସେମାନଙ୍କ ପ୍ରାପ୍ୟ ଫେରେଇ ଦେଇନ । Shooting staff ମାନଙ୍କର

ମାସ ମାସ ଧରି ପେମେଣ୍ଟ କରିନ । ସମସ୍ତେ ଚକ୍କାର କରୁଚନ୍ତି, ସେମାନଙ୍କ ସାଙ୍ଗରେ ତୁମେ ବିଶ୍ୱାସଘାତକତା କରିଚ ।

ଜୟନ୍ତ—ହଁ, ଜାଣେ, ସେମାନେ ଚକ୍କାର କରୁଥିଲେ, କରୁଥିବେ । ମୁଁ କିନ୍ତୁ ରୁପାର ଗ୍ଲୁବ୍ ମାରି ସମସ୍ତଙ୍କୁ ଚୁପ୍ କରି ଦେଇ ଆସିଚି ।

ଲଗ୍ନା—ରୁପାର ଗ୍ଲୁବ୍ ? କିନ୍ତୁ ତମେ ଟଙ୍କା ପାଇଲ କେଉଁଠୁ ?

ଜୟନ୍ତ—ତୁମେ ଶୁଣି ଖୁସି ହବ, ଲଗ୍ନା, ଅନ୍ତତଃ ମୋର ନିଜର ଅଧା କରିଥିବା ଗୋଟାଏ ଛବି complete କରି ଦବାର ବ୍ୟବସ୍ଥା ମୁଁ କରିଦେଇଆସିଚି । ଆଉ ସେଇଥିପାଇଁ Studio, Cameraman, Editor, ଆଉ Sound trolly ସମସ୍ତଙ୍କୁ ମୁଁ ଆଜି ଜବାବ ଦେଇଆସିଚି କାଲି shooting start କରିବା ପାଇଁ ।

ଲଗ୍ନା—କାଲି shooting ଆରମ୍ଭ କରିବ ? ହଉ, ଟଙ୍କା ଆଗେ ହାତକୁ ଆଣିସାରି ।

ଜୟନ୍ତ—ତା ମାନେ, ତୁମେ ଭାବୁଚ, ଟଙ୍କାଟା ମୁଁ ପାଇବି ନି ? ଏ ଟଙ୍କାଟା କାହାଠୁ ଆଣୁଚ, ଜାଣିଚ ? ତୁମରି ଅନାମ ପାଖରୁ ।

ଲଗ୍ନା—ଅନାମ ! ଅନାମ ତୁମକୁ ଟଙ୍କା ଦବ ?

ଜୟନ୍ତ—ହଁ, ଯୋଉ ଅନାମକୁ ତୁମେ ଜାଠ କମ୍ପାନୀର ଦେଢ଼ଶ ଟଙ୍କାର ଗୁଳକର ବୋଲି ଭାବଚ, ସେ କିନ୍ତୁ ସେଠି କିଣ, ଜାଣ ? ଲକ୍ଷ ଲକ୍ଷ ଟଙ୍କାର furniture supply କରୁଥିବା ସେଇ ବିରାଟ Firmର ବିଶ୍ୱସ୍ତ cashier । ସେଇଥିପାଇଁ ତା ଜବାବ ଉପରେ ମୋର ବିଶ୍ୱାସ ଅଛି ।

ଲଗ୍ନା— ହଁ, ହେଇପାରେ; Companyର ଲକ୍ଷ ଲକ୍ଷ ଟଙ୍କାର କାରବାର ହୁଏତ ତା'ରି ହାତରେ ହେଇଥାଏ । କିନ୍ତୁ ସେଥିରେ ତା'ର ନିଜସ୍ୱ କେଉଁ କଣ ଅଛି ?

ଜୟନ୍ତ—ଏଠି କିନ୍ତୁ ନିଜସ୍ୱ ନେଇ କଥା ଉଠୁନି ।

ଲଗ୍ନା—ତା ମାନେ, ସେଇ ଟଙ୍କାରୁ···?

ଜୟନ୍ତ—ହଁ, ଆପାତତଃ ସେଇ ଟଙ୍କାରୁ···

ଲଗ୍ନା—ନା, ତା ହୋଇପାରେ ନା; ମୁଁ ଜାଣିଶୁଣି ତା କରିବାକୁ ଦେବିନି ।

ଜୟନ୍ତ—ପୁଣି ଥରେ ଜୟନ୍ତର ରାସ୍ତାରେ ଛିଡ଼ା ହବାକୁ ଚେଷ୍ଟା କରୁଚ, ଲଗ୍ନା ? ମନେରଖ, ଯାର ଶେଷ ପରିଣତି ଭଲ ହବନି !

ଲଗ୍ନା (ଅନୁନୟ କରି) ଜୟନ୍ତବାବୁ, ମତେ ପଣାକାଠି କର ତୁମେ ଅନେକ ଖେଳିଚ, ଅନେକ ସଂସାର ଭାଙ୍ଗିଚ, ଅନେକ ଲୋକଙ୍କର ସର୍ବନାଶ କରିଚ, ପଥର ଭିକାରି କରିଚ, କାଙ୍ଗାଳ କରିଚ; ହେଲେ ନିରୀହ ଅନାମର ସର୍ବନାଶ କରନି । ତାକୁ ଦୟାକର, ଜୟନ୍ତ !

ଜୟନ୍ତ—ଅନେକ ଲୋକଙ୍କର ସର୍ବନାଶ ତୁମ ନିଜ ଆଖି ଆଗରେ ଦେଖି ଯଦି ନୀରବ ରହିଚ, ତା' ହେଲେ ଆଜ ଅନାମ ପାଇଁ ଏ ଅଯାଚିତ ଦୟା କାହିଁକି ?

ଲଗ୍ନା—କାରଣ ତମ···

ଜୟନ୍ତ—ତୁମେ ତାକୁ ଭଲପାଇ ବସିଚ···

ଲଗ୍ନା—( ଚିତ୍କାର କରି ) ନା, ମିଛ ! ଏ ଅନୁମାନ ତୁମର ଭୁଲ !

ଜୟନ୍ତ—ଯେତେ ଚିତ୍କାର କରି ତୁମେ ନା କହିଲେ ମଧ୍ୟ ତୁମେ ଆଜ ଧରା ପଡ଼ି-ଯାଇଚ । ଆଜ ଅନାମ ଯଦି ମାଲିକ ସହିତ ବିଶ୍ୱାସଘାତକତା କରି ମତେ ଟଙ୍କା ଦେଇଦିଏ, ତେବେ ସିଏ କାହିଁକି ଦେଉଚ, ଜାଣିଚ ? It is only for you.

ଲଗ୍ନା—ଜୟନ୍ତ !

ଜୟନ୍ତ—ଜୟନ୍ତ ଏତେ ବୋକା ନୁହେଁ, ଲଗ୍ନା ! ଅନାମ ଆଉ ତୁମର ଘନିଷ୍ଠତା ବଢ଼ିଯିବା ଭିତରେ ମୁଁ ଯେ ନୀରବ ଥିଲି ତା କେବଳ ଏଇ ମୁହୂର୍ତ୍ତର ପ୍ରତୀକ୍ଷାରେ । ଆଜ ସେ ସୁଯୋଗ ଆସିଚ; ମୁଁ ତା ହରେଇବାକୁ ଚାହେଁ ନା !

ଲଗ୍ନା  ଅନାମ ଅନ୍ଧ ହୋଇପାରେ; ହେଲେ ତା'ର ଏ ଦୁର୍ବଳତାର ସୁଯୋଗ ନବାକୁ ମୁଁ ଦେବିନି ।

ଜୟନ୍ତ—ତା ମୁଁ ବେଶ୍ ବୁଝିପାରୁଛି । ସେଥିପାଇଁ ଅନାମ ଏଠିକି ଟଙ୍କା ନେଇ ଆସିବାକୁ ଅପେକ୍ଷା ନ କରି, ମୁଁ ବରଂ ତା ପାଖକୁ ଯାଇ ଟଙ୍କାଟା ହାତ କରିନେବି ।

( ଜୟନ୍ତ ଚାଲିଯାଇଛି । ଲଗ୍ନା କ'ଣ ଭାବି ଫୋନ୍ ନିକଟକୁ ଆସିଛି )

ଲଗ୍ନା—355 please ! you ··· ··· Utkal Shaw mill ! ଅନାମବାବୁ ଅଛନ୍ତି ?···ସେ ଚାଲିଗଲେ ?···କେତେବେଳେ ? ··· ବର୍ତ୍ତମାନ ?··· ଆଚ୍ଛା, ତାଙ୍କୁ ଟିକେ ଖବର ଦେଇପାରିବେ ? ହଁ···ବିଶେଷ ଜରୁରୀ ଦରକାର···

ଅନାମ—( ଆସିଛି ) ଦରକାରଟା ଜରୁରୀ, ମୁଁ ଜାଣେ । ସେଥିପାଇଁ ଜୟନ୍ତବାବୁ ମୋତେ ସାତଟାରେ ଟାଇମ୍ ଦେଇଥିଲେ; କିନ୍ତୁ ମୁଁ ଛ'ଟାରେ ନେଇ ଆସିଛି ।

ଲଗ୍ନା—ଅନାମ ··!

ଅନାମ—ଆଉ ଭାବିବାର କ'ଣ ଅଛୁ ? ମୁଁ ସବୁ ଟଙ୍କା ନେଇ ଆସିଛି ।

ଲଗ୍ନା—ସବୁ ଟଙ୍କା ନେଇଆସିଛ ? କେତେ ଟଙ୍କା ?

ଅନାମ—( ଟଙ୍କା ଥଳି ଦେଖେଇ ) ଏଇ ସତୁରି ହଜାର ; ଏତିକି ହେଲେ ଚଳିବ ନି ?

ଲଗ୍ନା—ନା, ସତୁରି ହଜାର ହେବେ ଚଳିବ ନି; ସତୁରି ଲକ୍ଷ ହେଲେ ବି ଚଳିବନି । ତମେ ଜାଣିନି ଅନାମ, ଜୟନ୍ତର ସର୍ବଗ୍ରାସୀ କ୍ଷୁଧା ! ସତୁରି କୋଟି ହେଲେ ବି ଚଳିବ ନି ।

ଅନାମ—ଲଗ୍ନା ଦେବୀ, ତମେ କ'ଣ କହୁଛ ?

ଲଗ୍ନା—ଷଣ୍ଟ ହାଠ କମ୍ପାନୀର ସାମାନ୍ୟ ଦେଢ଼ଶ ଟଙ୍କାର ଗ୍ଳର୍କ ତୁମେ। ସତୁରି ହଜାର ଟଙ୍କା ନେଇ ଆସିପାରିଲ ?

ଅନାମ—ତୁମ ପାଇଁ ମୁଁ ସବୁ କରିପାରେଁ, ଲଗ୍ନା ଦେବୀ ?

ଲଗ୍ନା—ମୋ ପାଇଁ ? କାହିଁକି ?

ଅନାମ—ଜୟନ୍ତବାବୁ କହିଲେ, ତୁମର ଭୀଷଣ ବିପଦ । ଆଜ ରାତି ଭିତରେ ସତୁରି ହଜାର ଟଙ୍କା Income tax ଦାଖଲ ନ କଲେ ତୁମେ ହୁଏତ କାଲି ସକାଳେ arrest ହୋଇଯାଇପାର । ଏଇ ପରିସ୍ଥିତିରେ ମୁଁ ଚୁପ୍ ହୋଇ ରହିପାରିଥାନ୍ତି ?

ଲଗ୍ନା—ଜୟନ୍ତବାବୁ ତା'ହେଲେ ତୁମକୁ ଏଇକଥା କହି···

ଅନାମ—ତା'ହେଲେ ଏସବୁ କ'ଣ ମିଛ ?

ଲଗ୍ନା—ଏମିତି ମିଛ କଥା କହିବା ଜୟନ୍ତବାବୁଙ୍କର ଅଭ୍ୟାସ । ହେଲେ ତୁମେ ବିଶ୍ବାସ କରୁଥିଲ କାହିଁକି ?

ଅନାମ—ବିଶ୍ବାସ ?

ଲଗ୍ନା—ବୁଝୁନାହଁ କ'ଣ ? କହୁ କାହାକୁ ନ କହି ତୁମେ companyର ତହବିଲରୁ ଟଙ୍କା ଉଠେଇ ଆଣି ନ ?

ଅନାମ—ଲଗ୍ନା ଦେବୀ !

ଲଗ୍ନା—ଧର, ଏ ରାତି ଭିତରେ ଯଦି ତମ ମାଲିକ ଖବରଟା ପାଇଥାନ୍ତି ଓ ପୋଲିସ enquiry ହୁଏ ତେବେ ତୁମର ଅବସ୍ଥା କ'ଣ ହେବ, ଜାଣିଚ ? ତୁମେ ଆରେଷ୍ଟ ହେବ, ଥାନାକୁ ଯିବ; ତା'ପରେ enquiry ହେବ, ତା'ପରେ କୋର୍ଟ କଚେରି, ଶେଷକୁ ଜେଲ ।

ଅନାମ—ନା ! ( ଅଳ୍ପ ଉଠେଇ ଓ ଟଙ୍କା ଅଳିଟି ତା ହାତରୁ ଖସିପଡ଼ିଚି )

ଲଗ୍ନା—ଏ ଦୁଃସାହସ ତୁମେ କରୁଥିଲ କାହିଁକି ? କାହିଁକି ? କାହିଁକି ତୁମେ ଏ ଭୁଲ କରିବାକୁ ଗଲ ?

ଅନାମ—ଜୟନ୍ତବାବୁ ମତେ ନିର୍ଭର ଜବାବ ଦେଇ କହିଲେ, ଏଇ ଛଅଦିନ ଭିତରେ ଟଙ୍କା ଫେରେଇଦେବେ ।

ଲଗ୍ନା—( ଟଙ୍କା ଥଳିଟି ଉଠେଇନେଇ ନିଜେ ଧରିଛି ) ଆଜିଯାଏ ଜୟନ୍ତ କାହାକୁ ଟଙ୍କା ଫେରେଇଦେଇନି, କି ତୁମ ଟଙ୍କା ବି ଫେରେଇଦବନି ।

ଅନାମ—ତୁମେ କ'ଣ କହୁଛ ? ଜୟନ୍ତବାବୁଙ୍କ ଭଳି ଲୋକ···?

ଲଗ୍ନା– ଜୟନ୍ତକୁ ତୁମେ ଜାଣନା । ସେ ପଶୁ; ନା, ପଶୁଠାରୁ ବି ସେ ହୀନ । He is a scoundrel ଇମିତି ଭାବରେ କେତେ ଲୋକଙ୍କୁ ସେ exploit କରିଛି, ତା ତୁମେ ଜାଣନା । ତୁମ ଭଳି ସରଳ ଲୋକ ସେ ତା'ର ଶିକାର ହେବ, ଏକଥା ମୁଁ ବିଶ୍ୱାସ କରିପାରୁନି ।

ଅନାମ—ତା'ହେଲେ ତୁମେ କାହିଁକି ତାର ଶିକାର ହେଲ ? କୁହ, ଜବାବ ଦିଅ ! ଆଜି ମୁଁ ଯାହା କରିଛି, ସବୁ ତୁମରି ପାଇଁ ।

ଲଗ୍ନା—ମୋର ପାଇଁ ? କାହିଁକି ? ତା'ହେଲେ କଣ ଜୟନ୍ତ କହିବା କଥା ସତ ? ତୁମେ ମତେ ସତରେ ଭଲ ପାଇଛ ? ମତେ ନେଇ ନୀଡ଼ ରଚିବାର ସ୍ୱପ୍ନ ଦେଖିଛ ?

ଅନାମ—ମୋର କ'ଣ ଭୁଲ ହେଇଛି ?

ଲଗ୍ନା—( ଗଳା ଅବରୁଦ୍ଧ ) ଅନାମ ! ସତରେ ତୁମେ ମୋତେ ଭଲପାଇଛ ? ନା, ନା, ମୁଁ ତୁମଠୁ ଏୟା ଆଶା କରି ନ ଥିଲି । ଦୁନିଆରେ ଅନେକେ ମୋ ପାଇଁ ପାଗଳ ହେଇଚନ୍ତି । ହେଲେ ତୁମେ ମୋ ପାଇଁ ପାଗଳ ହେବ, ଏକଥା ମୁଁ ବୁଝିହେଁ ନା ।

ଅନାମ—ଲଗ୍ନା ଦେବୀ !

ଲଗ୍ନା—ନା, ଭୁଲ୍‌ଟା ମୋ'ରି । ପ୍ରଥମ ପରିଚୟରେ ମୋର କହିଦେବା ଉଚିତ ଥିଲା, ଦୁନିଆ ଆଖିରେ କୁମାରୀ ଅଭିନୟ କରୁଥିବା ଏଇ ଲଗ୍ନା ବିବାହିତା; ତା'ର ସ୍ୱାମୀ ଅଛି, ସଂସାର ଅଛି, ସନ୍ତାନ ବି ଅଛି ।

ଅନାମ—ଲଗ୍ନା ଦେଖ !

ଲଗ୍ନା—ହଁ, ଅନାମ, ବିଶ୍ୱାସ କର ! ପରିସ୍ଥିତିରେ ପଡ଼ି ମୋର ସ୍ୱାମୀ ବିନା ଦୋଷରେ ମିଛ କେସ୍‌ରେ ଯାନ୍ତି ଜେଲ । ଏକମାତ୍ର ଶିଶୁ ଓ ବୁଢ଼ାବାପା, ଏମାନଙ୍କୁ ବଞ୍ଚେଇବାପାଇଁ, Courtରେ ସ୍ୱାମୀଙ୍କର କେସ୍ ଲଢ଼ିବାପାଇଁ, ମୋର ଦରକାର ପଡ଼ିଲା ପ୍ରଚୁର ଟଙ୍କା । Employment Exchange ଅଫିସ୍‌ରେ ଚାକିରିଟିଏ ପାଇଁ ମୁଁ ଅପେକ୍ଷା କରିଥିଲି । ଆଉ ହଠାତ୍ ସେଇଠି ଦେଖା ହୁଏ ଜୟନ୍ତବାବୁଙ୍କ ସାଙ୍ଗରେ । ତା' ପରେ ଘଟଣା ଚକ୍ରରେ ମୁଁ ଏଠି । ଟଙ୍କା ମୁଁ ଚାହୁଁଥିଲି; ପାଇଛି । କିନ୍ତୁ ଆଜି ମୋର ଫେରିଯିବାର ସବୁ ବାଟ ବନ୍ଦ ହୋଇଯାଇଛି ।

ଅନାମ—ନା, କିଏ କହୁଛି ସେକଥା ? ମୁଁ ତୁମକୁ ଏଠୁ ନେଇଯିବି ।

ଲଗ୍ନା—ନା, ମୋ ପାଇଁ ଭାବିବା ଦରକାର ନାହିଁ । ତୁମେ ଏଠୁ ଚାଲିଯାଅ ଟଙ୍କା ନେଇ; ଯୋଉଠୁ ଆଣିଥିଲ ସେଇଠି ରଖିଦିଅ ।

ଅନାମ—କିନ୍ତୁ ତୁମେ ?

ଲଗ୍ନା—କହିଲି ତ ମୋ କଥା ଭାବିବା ଦରକାର ନାହିଁ । ତୁମେ ଚାଲିଯାଅ, ଚାଲିଯାଅ କହୁଛି ! ଜୟନ୍ତ ଆସିବା ପୂର୍ବରୁ ତୁମେ ଚାଲିଯାଅ । ମୋ କଥା ମନରୁ ପୋଛିଦିଅ । ଗାଁରେ ଜନନୀ ତୁମ ପାଇଁ ଅପେକ୍ଷା କରି ରହିଛି । ମତେ ନେଇ ଭୁଲରେ ତୁମେ ଯୋଉ ସ୍ୱପ୍ନ ଦେଖିଥିଲ, ସେସବୁ ପୋଛିଦିଅ । ଯାଅ ତୁମେ, ଚାଲିଯାଅ ।

[ ଅନାମ ହାତରେ ଅଙ୍କଟା ଧରେଇଦେଇଛି । ଅନାମ ଚାଲିଯାଇଛି । ଲଗ୍ନା ନୀରବରେ ଆଖିରୁ ଲୁହ ପୋଛି, ହଠାତ୍ ଯେମିତି ତା'ର କିଛି ମନେ ପଡ଼ିଯାଇଛି, ଶୀଘ୍ର ଯାଇ ଫୋନ୍ ରିସିଭର ଉଠାଇଛି ]

ଲଗ୍ନା—Police station please କଏ ? In charge ଅଫିସର ଚନ୍ଦ୍ରଚନ୍ଦ୍ର ? ହଁ, ମୁଁ ଚନ୍ଦନାସ୍ତିକା ଲଗ୍ନା । ମୁଁ ଆପଣଙ୍କର ସାହାଯ୍ୟ ଚାହେଁ । ହଁ, ହଁ···ଆପଣ ଦୟାକରି ଟିକେ ଶୀଘ୍ର ଏଠିକି ଆସିପାରିବେ ? Thanks·

[ ଫୋନ ରିସିଭର ଥୋଇଦେଇଛି । ହଠାତ୍ ଝଡ଼ ବେଗରେ ପଶିଆସିଛି ଜୟନ୍ତ । ତା'ର ଚେହେରାରୁ ଜଣାଯାଏ ସେ ଯେମିତି ଖ୍ୟାପଣ ଚାଲିଯାଇଛି । ଲଗ୍ନାକୁ ଦେଖି ଚକ୍କର କରିଉଠିଛି ]

ଜୟନ୍ତ – ଲଗ୍ନା, ଆଜିପର୍ଯ୍ୟନ୍ତ ମୁଁ ତୁମକୁ ପଶାକାଠି କରି ଖେଳି ଆସିଥିଲି । ଆଜି ତୁମେ ମତେ ନେଇ ଖେଳିବାକୁ ବସିଛ ?

ଲଗ୍ନା—( ଦୃଢ଼ ଓ ଧୀର ଗଳାରେ ) କଣ କହିବାକୁ ଚାହଁ ?

ଜୟନ୍ତ—ଅନାମ କାହିଁ ?

ଲଗ୍ନା—ମୁଁ ଜାଣେ ନା ।

ଜୟନ୍ତ—ଜାଣ ନା ? କିନ୍ତୁ ଦରୁଆନ୍ ମୁହଁରୁ ମୁଁ ଶୁଣିଆସିଲି, ସେ ଏଠିକି ଆସିଥିଲା ଓ ଫେରିଯାଇଛି ।

ଲଗ୍ନା—ହଁ, ମୁଁ ତାକୁ ଫେରେଇଦେଇଛି ।

ଜୟନ୍ତ—କାହିଁକି ?

ଲଗ୍ନା—ମୁଁ ଚାହେଁ ନା, ତା' ଭଳି ଗୋଟାଏ ଶାନ୍ତ ସରଳ ମଣିଷ ତୁମର ଶିକାର ହଉ ।

ଜୟନ୍ତ—ବାଘ ମୁହଁରୁ ଶିକାର ଛଡ଼େଇନବା ଜ ବିପଦ, ତା ତୁମେ ଜାଣ, ଲଗ୍ନା ?

ଲଗ୍ନା—ଜାଣେ ! ସେଥିପାଇଁ ମୁଁ ପ୍ରସ୍ତୁତ ହେଇ ରହିଛି ।

ଜୟନ୍ତ—ମାନେ ?

ଲଗ୍ନା—ମାନେ ! ମାନେ, ମୁଁ ବି ଏଇ ମୁହୂର୍ତ୍ତରେ ଏଠୁ ଗ୍ଲଲିଯାଉଛି । ମୁଁ ଜାଣେ, ଏତେ ସହଜରେ ତୁମେ ମୋତେ ଛାଡ଼ିଦେବ ନାହିଁ । ସେଥିପାଇଁ ମୁଁ ପୋଲିସର ସାହାଯ୍ୟ ମାଗିଛି । ବର୍ତ୍ତମାନ ହୁଏତ ସେମାନେ ଆସି ପହଞ୍ଚିଯିବେ ।

ଜୟନ୍ତ—( ମୁହଁର ସମସ୍ତ ଦାମ୍ଭିକତା ଯେମିତି ମଉଳିଯାଇଛି ) ଲଗ୍ନା ! ତମେ ଗ୍ଲଲିଯିବ ? କେଉଁଠିକି ଯିବ କୁଆଡ଼େ ?

ଲଗ୍ନା—କାହିଁକି ? ଯେଉଁଠୁ ଆସିଥିଲି । ମୁହଁରୁ ଏ ରଙ୍ଗ ପୋଛିଦେଇ ସେଠି ଯାଇ ଠିଆହେବାକୁ ମୋତେ ଲାଜ ଲାଗିବନି ।

ଜୟନ୍ତ—ଲଗ୍ନା···

ଲଗ୍ନା—ମୁଁ ଜାଣେ !

ଜୟନ୍ତ—ଜାଣିଚ, ଲୋକେ କଣ କହିବେ ?

ଲଗ୍ନା—ହଁ, ସେମାନଙ୍କ କଥାର ଜବାବ ଠିକ୍ କରି ରଖିଛି । କହିବି, ମୁଁ ନାୟିକା ନୁହେଁ, ନାରୀ ।

ଜୟନ୍ତ—କିନ୍ତୁ ତୁମ ପାଇଁ ମୁଁ ଯେଉଁ ସ୍ୱର୍ଣ୍ଣମଉଡ଼ ଗଢ଼ିଥିଲି, ତା'ର ଶାନ୍ତସ୍ନିଗ୍ଧ ନିରାପଦ ଆଶ୍ରୟ ଛାଡ଼ି ତୁମେ ପୁଣି ଆକାଶରେ ଡେଣା ମେଲେଇବାକୁ ଚାହାଁଉଚ ? ଜାଣ, ଝଡ଼ ଝଞ୍ଜା ବର୍ଷା ବିଦ୍ୟୁତ୍‌ରେ ସେ ଆକାଶ ସବୁବେଳେ ଅଶାନ୍ତ, ଅସ୍ଥିର ?

ଲଗ୍ନା—ହଁ, ସେଇ ଝଡ଼, ଝଞ୍ଜା, ବର୍ଷା, ବିଦ୍ୟୁତ୍···ତା'ରି ଭିତରେ ମୁଁ ଡେଣା ମେଲିଦେବି । ଖୋଜିନେବି ମୋର ଆଶ୍ରୟ ସେଇ ଅଚିହ୍ନା ଆକାଶରେ ।

( ଲଗ୍ନା ପଳେଇଯାଇଛି । ବାହାରେ ପୋଲିସ ଜିପ୍‌ର ଶବ୍ଦ )

ଜୟନ୍ତ—ମୁଁ ତୁମକୁ ଯିବାକୁ ଦେବି ନି, ଲଗ୍ନା, ଲଗ୍ନା··· ( ଆଗେଇ ଗଲାବେଳେ ପଶିଆସିଛି ସୁମିତା । ସୁମିତାକୁ ଦେଖି ଚମକି ଉଠିଛି ଜୟନ୍ତ )

ସୁମିତା—କଣ, ଡରିଗଲ ? ଲଗୁଥିଲା ଗୋଟାଏ ସୁନ୍ଦର ମୂର୍ତ୍ତି ଜାଗାରେ ମୋର ଏ ପୋଡ଼ା ମୂର୍ତ୍ତିଟା ଦେଖି ସତରେ ତୁମେ ଡରିଯାଇଚ ? ( ତାଚ୍ଛଲ୍ୟରେ )

ଜୟନ୍ତ—ସୁମିତା ??

ସୁମିତା—କିନ୍ତୁ ଡରିବାର କଣ ଅଛି ? ଏଇ ମୂର୍ତ୍ତିଟାକୁ ତ ତୁମେ ସୃଷ୍ଟି କରିଚ; ଏଥିରେ ଭୟ କରିବାର କଣ ଅଛି ?

ଜୟନ୍ତ ସୁମିତା!, ତୁମେ ବଞ୍ଚିଚ ? ( ସେ ଯେମିତି ବିଶ୍ୱାସ କରିପାରୁ ନ ଥିଲା । )

ସୁମିତା—ନା୍ୟେବା ସୁମିତାକୁ ତୁମେ ମାରିଦେଇଚ । ହେଲେ ମୁଁ ବଞ୍ଚିରହିଚି ପଶାଖେଳରେ ତୁମର ହାରିଯିବାଟା ଦେଖିବାପାଇଁ···ହାଃ···ହଃ ·· ହାଃ···( ହସିଉଠିଲା ବଜ୍ରଧ୍ୱନିର ହସ । )

ଜୟନ୍ତ—ସୁମିତା··· ! ( ସହିପାରୁ ନ ଥିଲା ସୁମିତାର ହସ )

ସୁମିତା—ସତରେ ତୁମେ ଆଜି ହାରିଯାଇଚ, ହାରିଯାଇଚ ତୁମେ ଅସହାୟ ଭାବରେ । ଆଜି ସେଇକଥା ଦେଖି ମୁଁ ହସୁଚି ।

ଜୟନ୍ତ—ସୁମିତା ! !

ସୁମିତା—ରାବଣର ସ୍ୱର୍ଣ୍ଣଲଙ୍କା ଆଜି ଜଳିପୋଡ଼ି ଏକାକାର ହେଇଯାଇଚି । ଆଜି ସେଠି ଖାଲି ଅଙ୍ଗାର, ପାଉଁଶ, ଧୂଆଁ ! ( ହାଃ-ହାଃ-ହେଇ ହସିଲା )— କୁହ, କୁହ କଣ ପାଇଲ । ଜୀବନର ହିସାବ ଖାତାର ଲାଭ ଘରର ଅଙ୍କ କେତେ ? କୁହ ତୁମେ, କଣ ପାଇଲ ? ( ହସିଲା )

ଜୟନ୍ତ—ନା, ନା, ମୁଁ କିଛି ପାଇନି । ମୁଁ ହାରିଯାଇଚି । ଅଶୋକ ବନର ବନ୍ଦିନୀ ସୀତା ମୁକ୍ତିର ଆନନ୍ଦରେ ଛୁଟିଯାଇଚି ଅଯୋଧ୍ୟାପୁରୀକୁ । ହାଃ-ହାଃ-ହାଃ !

